# ଅନାଲୋଚିତ ପ୍ରତିଭା ଶଶିଭୂଷଣ ମିଶ୍ରଶର୍ମା

(ବୁଢ଼ାମାଷ୍ଟ୍ରେ)


ଲେଖକ

ଶ୍ରୀ ଦୀପ୍ତିରଞ୍ଜନ ଶେଠ

ଶ୍ରୀ ପ୍ରସନ୍ନ କୁମାର ଦାଶ



ପ୍ରକାଶକ

ଶ୍ରୀ ପ୍ରସନ୍ନ କୁମାର ଦାଶ

(ଭୂତପୂର୍ବ ହେଡ୍‌ମାଷ୍ଟର, ରାଣାପ୍ରତାପ ହାଇସ୍କୁଲ)

ବରଗଡ଼

**Analochita Pratibha : Sashibhusan Mishrasarma**
**Written by** : Sj. Diptiranjan Seth & Sj. Prasanna Kumar Dash
**Published by** : Sj. Prasanna Kumar Dash
(Retd. Headmaster, Bargarh)
First Edition : May, 2015
**Typesetting & Printed at** : Optima Offset Prints
Sutahat, Cuttack-753001, Odisha
Price : Rs. 150/-
*(Rupees one hundred fifty only)*

ପ୍ରକାଶକ : ଶ୍ରୀ ପ୍ରସନ୍ନ କୁମାର ଦାଶ
ବରଗଡ଼, (ଓଡ଼ିଶା)

ମୁଦ୍ରଣ : ଅପ୍ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍
ସୂତାହାଟ, କଟକ-୧, (ଓଡିଶା)

ପ୍ରଥମ ସଂସ୍କରଣ : ମଇ, ୨୦୧୫
*(ମୁଦ୍ରିତ ବହି ସଂଖ୍ୟା - ୬୦୦)*

ମୂଲ୍ୟ : ଟ. ୧୫୦/- (ଏକଶହ ପଚାଶ ଟଙ୍କା ମାତ୍ର)

# ମୁଖବନ୍ଧ

ସାହିତ୍ୟିକ ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ାମାଷ୍ଟ୍ରେ)ଙ୍କ ଜୀବନୀ ଓ ସାହିତ୍ୟ ଉପରେ ତାଙ୍କ ଜୀବଦ୍ଦଶାରେ ବିଶେଷ କିଛି ଆଲୋଚିତ ହୋଇ ନାହିଁ । ଫଳରେ ସେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶଙ୍କ ଭଳି ଜନତାର ଅନ୍ତରାଳରୁ ଲୁଚି ବସିବା ଉପରେ । ଏହା ଆମ ଭାଷା ଓ ସାହିତ୍ୟ ପାଇଁ ଭବିଷ୍ୟତ ଚିନ୍ତାର ଯେପରି ଗଭୀର ଚିନ୍ତନୀୟ ବିଷୟ । ଲେଖକ ଶଶିଭୂଷଣ ବହୁ ମୂଲ୍ୟବାନ୍ ତଥା ମୌଳିକ-ସାହିତ୍ୟ ସୃଷ୍ଟି କରିଥିଲେ ମଧ୍ୟ ତାଙ୍କ ଜୀବିତାବସ୍ଥାରେ ଅଧିକାଂଶ ପ୍ରକାଶିତ ହୋଇ ପାରିନାହିଁ କି ସେଥିପାଇଁ ସେ କୌଣସି ସରକାରୀ ଅନୁଷ୍ଠାନ କିମ୍ବା କାହାର କରୁଣା-ପ୍ରାର୍ଥୀ ହୋଇ ନଥିଲେ । ଏହାହିଁ ତାଙ୍କ ଜୀବନ ଓ ଚରିତ୍ରର ଗୋଟିଏ ବିଶେଷ ଲକ୍ଷଣ ଓ ଏକ ମହତ୍ତ୍ୱପୂର୍ଣ୍ଣ ଦିଗ । ଏଭଳି ଜଣେ ପରିପୂର୍ଣ୍ଣ ତଥା ଚରିତ୍ରବାନ୍ ମଣିଷଙ୍କ ଜୀବନୀ ଆମପାଇଁ ଯେପରି ପୁଣ୍ୟ ଓ ପବିତ୍ର, ସେପରି ଶିକ୍ଷାପ୍ରଦ ଓ ଉପାଦେୟ । ତାଙ୍କ ଜୀବନରୁ ଆମକୁ ବହୁତ କିଛି ଶିଖିବାର ଅଛି । ଏଭଳି ଜଣେ ସତ୍ୟସନ୍ଧ-ଆଜୀବନ ଶିକ୍ଷକଙ୍କ କୋମଳ ପ୍ରାଣ କିପରି ହୋଇଥିବ, ତାହା ଚିନ୍ତାକଲେ ସଂପୂର୍ଣ୍ଣ ଆଶ୍ଚର୍ଯ୍ୟ-ଚକିତ ହେବାକୁ ପଡ଼େ ।

ସମ୍ଭବତଃ, ଶଶିଭୂଷଣ ମିଶ୍ରଶର୍ମାଙ୍କ ଜୀବନୀ ସମ୍ବନ୍ଧରେ ପ୍ରଥମକରି ବହୁବର୍ଷ ପୂର୍ବେ ଓଡ଼ିଶାର ବିଶିଷ୍ଟ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ତାଙ୍କର ଆତ୍ମ-ଚରିତ "ସ୍ରୋତସ୍ୱତୀ'ରେ ଉଲ୍ଲେଖ କରିଥିଲେ । ଗୋପୀନାଥ ମହାନ୍ତି ଅଳ୍ପକାଳ ପାଇଁ ବରଗଡ଼ରେ ସେକେଣ୍ଡ ଅଫିସର୍ ଥିବାବେଳେ ସାହିତ୍ୟିକ ଶଶିଭୂଷଣ ମିଶ୍ରଙ୍କ ସହିତ ପରିଚୟ ଓ ପରେ ପରେ ନିବିଡ଼ ସଂପର୍କ ଗଢ଼ି ଉଠିଥିଲା । ଏପରିକି ବିଭିନ୍ନ ସମୟରେ, ବିଭିନ୍ନ ବିଷୟରେ ଉଭୟଙ୍କ ମଧ୍ୟରେ ରାତି ରାତି ବିଚାର ଆଲୋଚନା ହେଉଥିଲା । ଫଳରେ ଶଶିଭୂଷଣଙ୍କ ପାରିବାରିକ ଜୀବନ ଓ ସୃଷ୍ଟି-ପ୍ରତ୍ୟୟ ସଂପର୍କରେ ଔପନ୍ୟାସିକ ଶ୍ରୀ ମହାନ୍ତି ଭଲଭାବରେ ଜାଣିପାରିଥିଲେ । ଶଶିବାବୁଙ୍କ ସମ୍ବନ୍ଧରେ ଗୋପୀବାବୁ "ସ୍ରୋତସ୍ୱତୀ"ରେ ଯାହା ଉଲ୍ଲେଖ କରିଛନ୍ତି ତାହା ହେଉଛି :

"ବରଗଡ଼ର ହାଇସ୍କୁଲରେ ଜଣେ ଶିକ୍ଷକ ଥିଲେ, ଶ୍ରୀ ଶଶିଭୂଷଣ ମିଶ୍ର । ଛାତ୍ରମାନେ ତାଙ୍କୁ ଦେବତା ପରି ମାନୁଥିଲେ, ସେ ଛାତ୍ରମାନଙ୍କ ସହିତ ନିକଟ ଆତ୍ମୀୟ ପରି ସ୍ନେହ ସମ୍ବନ୍ଧ ରଖି ତାଙ୍କ ସୁଖ ଦୁଃଖ ବୁଝୁଥିଲେ, ଛାତ୍ରଙ୍କୁ ଆଶା, ଉତ୍ସାହ ଓ ପ୍ରେରଣା ଦେଉଥିଲେ,ଉତ୍ତମ ମନୁଷ୍ୟ ହେବାକୁ ପ୍ରବର୍ତ୍ତାଉ ଥିଲେ ।

ତାଙ୍କ ବେଶଭୂଷା ଓ ଚଳଣିରେ ସେ ଖୁବ୍ ସରଳ ଥିଲେ । ନିଜେ ଅବସ୍ଥାକୁ ଆଦରି ନିଜ ଭିତରେ ଶାନ୍ତ ସମାହିତ ରହୁଥିଲେ, ସେ ସ୍ୱାଧୀନଚେତା ଓ ନିର୍ଭୀକ ଥିଲେ, ଅନ୍ୟାୟ, ମନ୍ଦକୁ ଘୃଣା କରୁଥିଲେ, କାହାକୁ ଖୁସାମତ କରୁ ନଥିଲେ, ପ୍ରତ୍ୟେକ ବିଷୟରେ ତାଙ୍କ ନିଜର ସୁଚିନ୍ତିତ ମତ ଥିଲା, ତାଙ୍କ ମୂଲ୍ୟବୋଧ ଥିଲା ଶାସ୍ତ୍ରୀୟ ନୀତିସମ୍ମତ । ଘରେ ତାଙ୍କ ସ୍ତ୍ରୀ ପାଗଳ । ବେଳେ ବେଳେ ସେ ଘରେ, ରାସ୍ତାରେ ଯେଉଁଠି ସେଇଠି ସ୍ୱାମୀଙ୍କୁ ମାଡ଼ ମାରୁଥିଲେ, ଆମ୍ପୁରି ଓଟାରି ତାଙ୍କ କାମିଜ ଚିରି ପକାଉଥିଲେ, ଶଶିବାବୁ ଧୈର୍ଯ୍ୟଧରି ସହନ୍ତି, କେବେ ତାଙ୍କ ଉପରେ ବିରକ୍ତ ହୁଅନ୍ତି ନାହିଁ; ଘରର ଏପରି ନାନା ସମସ୍ୟା ଭିତରେ ସେ ଘରର ସବୁ କାମ କରନ୍ତି, ତାଙ୍କ ପିଲାଙ୍କର ଯତ୍ନ ନିଅନ୍ତି ସ୍କୁଲରେ ପାଠ ପଢ଼ାନ୍ତି, ସ୍କୁଲ ପିଲାଙ୍କୁ ସଦୁପଦେଶ ଦିଅନ୍ତି ଓ ନିଜେ ନାନା ଧର୍ମଗ୍ରନ୍ଥ, ଦର୍ଶନ ପଢ଼ନ୍ତି । ସେ କ୍ୱଚିତ୍ କାହା ଘରକୁ ଯାଆନ୍ତି, ଆଡ୍ଡା, ବାଜେ ଗପ, ଶସ୍ତା-ପରଚର୍ଚ୍ଚା ଆଦିଠୁଁ ଦୂରେଇ ରହନ୍ତି । କେବେ କେବେ ସେ ଓ ମୁଁ ଏକାଠି ହୋଇ କଥାଭାଷା କରିଛୁଁ । ମୋର ଧାରଣା ହେଲା, ସେ ନାନା ସଦ୍‌ଗୁଣର ଅଧିକାରୀ, ନିଜେ ଜଣେ ସାହିତ୍ୟପ୍ରେମୀ । କାଳକ୍ରମେ ସେ ସମ୍ବଲପୁରୀ କଥିତ ଓଡ଼ିଆରେ ସୁନ୍ଦର ପଦ୍ୟ ଲେଖୁଥିଲେ । ସେ ଗରିବ ଦୁଃଖୀଙ୍କ ଦୁଃଖ ଦୁର୍ଦ୍ଦଶା, ଅନ୍ୟାୟ, ଶୋଷଣ, ଅତ୍ୟାଚାର, ସେମାନଙ୍କ ମନରେ ଭିତରର କୁହୁଳୁଥିବା ଦୁଃଖ, ଅଶାନ୍ତି, କ୍ରୋଧ ଏହିସବୁ ବିଷୟରେ ଗଭୀର ସମ୍ବେଦନଶୀଳ କବିତା ଲେଖୁଥିଲେ । ସେ ନିଜେ ଯେଉଁ ପରିବେଶ ଭିତରେ ଥିଲେ ତହିଁରେ କେତେ ଲେଖି ପାରିଥିଲେ ମୁଁ ଜାଣି ନାହିଁ, କିନ୍ତୁ ତାଙ୍କର ଅଳ୍ପ କେତୋଟି କବିତା ଥାଇ ଖୁବ୍ ଚଟି ପୁସ୍ତିକାଟିଏ ପଛେ ପ୍ରକାଶ ପାଇଥିଲା ।" (ସ୍ରୋତସ୍ୱତୀ: ତୃତୀୟ ଭାଗ– ୨୦୦୦, ପୃ. ୪୨୮)

ଔପନ୍ୟାସିକ ଶ୍ରୀ ମହାନ୍ତିଙ୍କ ବ୍ୟତୀତ ସାହିତ୍ୟିକ ମିଶ୍ରଶର୍ମାଙ୍କ ସଂପର୍କରେ ଛୋଟ ବଡ଼ ଅଳ୍ପ କିଛି ପ୍ରବନ୍ଧ ପ୍ରକାଶିତ ହୋଇଛି । ସମୀକ୍ଷା ମୂଳକ ପ୍ରବନ୍ଧ ବୋଲି ଏଗୁଡ଼ିକୁ ତ ଆଦୌ କୁହାଯାଇ ପାରିବ ନାହିଁ; କିନ୍ତୁ ତଥ୍ୟ ସଂଗ୍ରହ ଦୃଷ୍ଟିରୁ ଏଗୁଡ଼ିକର ଯେ ସାହିତ୍ୟିକ ମୂଲ୍ୟ ଅଛି, ଏହା ନିଃସନ୍ଦେହରେ କୁହାଯିବ ।

ସାହିତ୍ୟକ ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ାମାଷ୍ଟ୍ରେ)ଙ୍କ ଉଭୟ ଜୀବନୀ ଓ ସୃଷ୍ଟି-ପ୍ରତ୍ୟୟ ଉପରେ ଖଣ୍ଡିଏ ମନୋଗ୍ରାଫ୍ ଲେଖିବାପାଇଁ ମତେ ପ୍ରେରଣା ଦେଇଛନ୍ତି, ଶଶିଭୂଷଣଙ୍କ କେତେକ ରଚନାବଳୀ, ସମକାଳୀନ ତଥ୍ୟ ଅକୁଣ୍ଠ ଚିତ୍ତରେ ଯୋଗାଇ ଦେଇଛନ୍ତି ବିଶିଷ୍ଟ ଶିକ୍ଷାବିତ୍ ଓ ସାରସ୍ୱତ ସଂଗଠକ ପୂଜ୍ୟ ଶ୍ରୀଯୁକ୍ତ ପ୍ରସନ୍ନକୁମାର ଦାଶ (ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ, ରାଣୀ ପ୍ରତାପ ହାଇସ୍କୁଲ, ବରଗଡ଼) ।

ସେହିପରି ଏହି ପୁସ୍ତକ ଶୀଘ୍ର ପ୍ରକାଶିତ ହେବାର ଶୁଭ କାମନା କରିଛନ୍ତି ସମ୍ବଲପୁରର ପୂର୍ବତନ ସାଂସଦ ପୂଜ୍ୟ ଶ୍ରୀଯୁକ୍ତ ଶ୍ରୀବଲ୍ଲଭ ପାଣିଗ୍ରାହୀ ମହାଶୟ । ଉଭୟଙ୍କର ସୌଜନ୍ୟତା ଭୁଲିବାର ନୁହେଁ । ତେଣୁ ଉଭୟଙ୍କୁ ସଭକ୍ତି ନମସ୍କାର କରୁଛି । "ଅନାଲୋଚିତ ପ୍ରତିଭା– ଶଶିଭୂଷଣ ମିଶ୍ରଶର୍ମା' ଶୀର୍ଷକ ପୁସ୍ତକର ପ୍ରସ୍ତୁତି କାଳରେ ପ୍ରଫେସର ମୀନକେତନ ପୁରୋହିତ, ପ୍ରଫେସର ହୃଦମଣି ପ୍ରଧାନ, କବିପୁତ୍ର ଶ୍ରୀଯୁକ୍ତ ଦୁର୍ଗାପ୍ରସାଦ ମିଶ୍ର, ଗବେଷକ ଦେବେନ୍ଦ୍ରକୁମାର ଦାଶ, ଗବେଷକ ଡକ୍ଟର୍ ଗୌରାଙ୍ଗ ଚରଣ ଦାଶ (ପ୍ରଫେସର, ଓଡ଼ିଆ ବିଭାଗ, ରେଭେନ୍‌ସା ବିଶ୍ୱବିଦ୍ୟାଳୟ କଟକ), ଗବେଷକ ଡକ୍ଟର୍ ଶଶାଙ୍କଶେଖର ପଣ୍ଡା, ଡକ୍ଟର ଫଣୀନ୍ଦ୍ରଭୂଷଣ ନନ୍ଦ, ପ୍ରଫେସର ଡକ୍ଟର୍ ରଘୁନାଥ ମେହେର ପ୍ରମୁଖ ସୁଧୀବର୍ଗ ବହୁ ମୂଲ୍ୟବାନ୍ ପରାମର୍ଶ ଓ ଉଚ୍ଚ ପ୍ରେରଣାମାନ ପ୍ରଦାନ କରିଛନ୍ତି । ସମସ୍ତଙ୍କୁ ପ୍ରଣାମ ଜଣାଉଛି । ସେହିପରି କଟକ "ଉତ୍କଳ ସାହିତ୍ୟ ସମାଜ'ର 'ମଧୁସୂଦନ ପାଠାଗାର'ରେ ଥିବା ସାପ୍ତାହିକ ସମ୍ବାଦପତ୍ର 'ସମ୍ବଲପୁର ହିତୈଷିଣୀ' ଓ 'ଉତ୍କଳ ସେବକ'ର କେତେକ ସଂଖ୍ୟା ଦେଖିଛି । 'ଓଡ଼ିଶା ରାଜ୍ୟ ଅଭିଲେଖାଗାର'ରେ ଥିବା 'ଉତ୍କଳ ଦୀପିକା' ଓ 'ସମ୍ବଲପୁର ହିତୈଷିଣୀ' ତଥା ଭୁବନେଶ୍ୱରସ୍ଥିତ 'କେଦାରନାଥ ଗବେଷଣା ପରିଷଦ' ପାଠାଗାରରେ ସଂରକ୍ଷିତ ଥିବା କବି ଦୟାନିଧି ମିଶ୍ରଙ୍କ ସଂପାଦିତ 'ନବଯୁଗ' ପତ୍ରିକା କେତୋଟି ସଂଖ୍ୟାର ସାହାଯ୍ୟ ନେଇଛି । ତେଣୁ ସବୁ ଅନୁଷ୍ଠାନର କର୍ମକର୍ତ୍ତାଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଛି । ଏହି ପୁସ୍ତକର ମୁଦ୍ରଣ କାର୍ଯ୍ୟରେ 'ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍'ର ପରିଚାଳକ ଶ୍ରୀ ତପନ କୁମାର ମହାପାତ୍ର ସହଯୋଗ କରିଛନ୍ତି । ତାଙ୍କୁ ପ୍ରଣାମ ଜଣାଉଛି ।

ଆଜିର ଏଇ ଶୁଭ ଅବସରରେ "ଅନାଲୋଚିତ ପ୍ରତିଭା– ଶଶିଭୂଷଣ ମିଶ୍ରଶର୍ମା" ଶୀର୍ଷକ ପୁସ୍ତକ ଖଣ୍ଡିକ ଓଡ଼ିଶାର ବିଦ୍ୱାନ୍‌ମଣ୍ଡଳୀଙ୍କ ହାତରେ ଅର୍ପଣ କରି ନିଜକୁ କୃତାର୍ଥ ମଣୁଛି ।

ଇତି

ଶ୍ରୀ ଦୀପ୍ତିରଞ୍ଜନ ଶେଠ

ବାବୁବନ୍ଧ,

ତା।୨୮-୦୨-୨୦୧୫

ଶନିବାର

(ଶ୍ରୀରାମ ନବମୀ)

# ପ୍ରକାଶକଙ୍କ କଲମରୁ :

ମହାନ୍ ଶିକ୍ଷକ ୰ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ାମାଷ୍ଟ୍ରେ)ଙ୍କ ସଂପର୍କରେ ଖଣ୍ଡିଏ ଜୀବନୀ ପୁସ୍ତିକା ଅତିଶୀଘ୍ର (ବିଳମ୍ବ ହୋଇଥିଲେ ମଧ୍ୟ) ପ୍ରକାଶିତ ହେବାକୁ ଯାଉଛି। ଶିକ୍ଷକ ହିସାବରେ ମୋର ଅବସର ନେବାର ୧୭ ବର୍ଷ ହୋଇଯାଇଛି। ମୋର ସ୍ୱପ୍ନ ସାକାର ହେବାକୁ ଯାଉଛି, ଏଥିପାଇଁ ମୁଁ ପ୍ରଫୁଲ୍ଲିତ।

୰ ମିଶ୍ରଶର୍ମାଙ୍କର ଜୀବଦ୍ଦଶାରେ ଶିକ୍ଷକ ଶ୍ରୀ ଦୁର୍ଗାପ୍ରସାଦ ମିଶ୍ର (୰ମିଶ୍ରଶର୍ମାଙ୍କ ସୁପୁତ୍ର) ୧୩ ଖଣ୍ଡ ପୁସ୍ତକ ପ୍ରକାଶ କରିଥିଲେ ଓ ପରେ ୭ଖଣ୍ଡ ପୁସ୍ତକ ପ୍ରକାଶିତ ହୋଇ ଲୋକଲୋଚନକୁ ଆସି ସାରିଛି। ୰ମିଶ୍ରଶର୍ମା ମହାଶୟ ଓଡ଼ିଆ, ଇଂରାଜୀ, ସଂସ୍କୃତ ତଥା ସମ୍ବଲପୁରୀ-କୋଶଳୀ ଭାଷାରେ ଲେଖନୀ ଚାଳନା କରି ସାହିତ୍ୟାନୁରାଗୀବୃନ୍ଦଙ୍କୁ ଆପ୍ୟାୟିତ କରି ପାରିଥିଲେ। ବୁଢ଼ାମାଷ୍ଟ୍ରେ ଶିକ୍ଷକ ଭାବରେ ରାଜ୍ୟପାଳ ପୁରସ୍କାର ଓ ସାହିତ୍ୟିକ ହିସାବରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନୀତ ହୋଇଥିଲେ।

ଏହି ପୁସ୍ତକର ଲେଖକ ଶ୍ରୀମାନ୍ ଦୀପ୍ତିରଞ୍ଜନ ଶେଠ ହେଉଛନ୍ତି ପ୍ରେରଣାର ଉତ୍ସ। ତାଙ୍କର ସାହାଯ୍ୟ ଓ ସହାନୁଭୂତି ହିଁ ଆଜି ଏହି ଜୀବନୀ ଗ୍ରନ୍ଥ ପ୍ରକାଶିତ ହୋଇ ବରଗଡ଼ ଜର୍ଜ ହାଇସ୍କୁଲର ଶତବାର୍ଷିକୀ ମହୋତ୍ସବ (୧୯୧୪-୨୦୧୫)ରେ ଅର୍ପଣ କରିବାର ବ୍ୟବସ୍ଥା ହେବାକୁ ଯାଉଛି। ଶ୍ରୀ ଶେଠ ହେଉଛନ୍ତି ଧନ୍ୟବାଦର ପାତ୍ର।

ଏତଦ୍‌ବ୍ୟତୀତ ଏହି ଜୀବନୀ ପୁସ୍ତିକା ପ୍ରକାଶନରେ ତଳ ଲିଖିତ ମହାନ୍ ବ୍ୟକ୍ତି ବିଶେଷଙ୍କର ପ୍ରେରଣା ଓ ସହଯୋଗ ସବୁବେଳେ ସ୍ମରଣୀୟ ହୋଇ ରହିବ। ସମସ୍ତଙ୍କୁ ମୁଁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି। ସର୍ବଶ୍ରୀ ଅଧକ୍ଷ ମୀନକେତନ ପୁରୋହିତ, ଡ. ନନ୍ଦକିଶୋର ଦାଶ, ଡ. ଲିଙ୍ଗରାଜ ନାଏକ, ଶିକ୍ଷକ ବୃନ୍ଦାବନ ପ୍ରଧାନ, ଡାକ୍ତର ରମାବଲ୍ଲଭ ମିଶ୍ର, ଅଧ୍ୟାପକ ହୃଦମଣି ପ୍ରଧାନ, ଆଇନଜୀବୀ ହୃଷୀକେଶ ଆଚାର୍ଯ୍ୟ, ପୂର୍ବତନ ମନ୍ତ୍ରୀ ପ୍ରକାଶ ଚନ୍ଦ୍ର ଦେବତା, ପୂର୍ବତନ ମନ୍ତ୍ରୀ ପ୍ରସନ୍ନ ଆଚାର୍ଯ୍ୟ, ପୂର୍ବତନ ବିଧାନସଭା ସଦସ୍ୟ ସାଧୁଚରଣ ନେପାକ, ଶିକ୍ଷକ ଅମୃତଲାଲ ସାହୁ, ଡ. ବିଜୟକୃଷ୍ଣ ମିଶ୍ର, କବି ଦିବ୍ୟକିଶୋର ଦେବତା, ଅଧ୍ୟାପକ ନେତ୍ରଭାନୁ ପ୍ରଧାନ, ସମାଜସେବୀ ଉତ୍ପନ୍ନ କୁମାର ଭୋଇ, ଶିକ୍ଷକ କୃଷ୍ଣଚନ୍ଦ୍ର ଦଳାଇ ଓ ଇଂ. ଅସୀମ ମିଶ୍ର (୰ବୁଢ଼ାମାଷ୍ଟ୍ରେଙ୍କ ପୌତ୍ର) ଆଦି।

ସେହି ପ୍ରବାଦ ପୁରୁଷ ୰ମିଶ୍ରଶର୍ମାଙ୍କର ଆଶିଷ କାମନା କରୁଛି।

ତା. ୦୯।୧୨।୨୦୧୪
ବରଗଡ଼

ପ୍ରସନ୍ନ କୁମାର ଦାଶ
ରାଣାପ୍ରତାପ ହାଇସ୍କୁଲ, ବରଗଡ଼

# ସୂଚୀପତ୍ର



—

## କବି ଶଶିଭୂଷଣ ମିଶ୍ରଶର୍ମାଙ୍କ ବଂଶଲତା ପରିଚୟ





[ ଚିତ୍ର-୧ ]

ଶିକ୍ଷକ ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ାମାଷ୍ଟ୍ରେ)

ଆବିର୍ଭାବ : ତା ୨୫।୩।୧୮୯୬, ଚୈତ୍ରଶୁକ୍ଳ ଏକାଦଶୀ, ବୁଧବାର ।

ତିରୋଧାନ :ତା ୫।୬।୧୯୭୬, ଜ୍ୟେଷ୍ଠଶୁକ୍ଳ ସପ୍ତମୀ, ଶନିବାର ।



[ ଚିତ୍ର-୪ : ବରଗଡ଼ର ଜର୍ଜ ହାଇସ୍କୁଲ୍‌ରେ ଶିକ୍ଷକ ଶଶିଭୂଷଣ ମିଶ୍ରଶର୍ମାଙ୍କ ଦ୍ୱାରା ଜାତୀୟ ପତକା ଉତ୍ତୋଳନ । ସନ ୧୫।୮।୧୯୫୯ ]



[ ଚିତ୍ର-୫ : ଯୁବକ କବି ଶଶିଭୂଷଣ ]



[ ଚିତ୍ର–୬ : ଓଡିଶାର ଭୂତପୂର୍ବ ଶିକ୍ଷାମନ୍ତ୍ରୀ ପବିତ୍ରମୋହନ ପ୍ରଧାନ ଓ ଶିକ୍ଷକ ଶଶିଭୂଷଣ ମିଶ୍ର ଶର୍ମା, ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ, ସାମ୍ବାଦିକ ପ୍ରଫୁଲ୍ଲ କୁମାର ଦାଶ ଓ ଅନ୍ୟମାନେ । ସମୟ ସନ (୧୯୬୧-୬୨) ]

Source: Author, Digitized by PPRACHIN, SOA




[ ଚିତ୍ର–୭ : ବରଗଡ଼ ଟାଉନ ହାଇସ୍କୁଲ୍‌ର ନୂତନ ଗୃହର ଭିତ୍ତିପ୍ରସ୍ତର ସ୍ଥାପନ । ]



[ ଚିତ୍ର–୮ : ତା ୨୫।୯।୨୦୧୩ : ଅଗ୍ରଗାମୀ ପାଠାଗାର, ବରଗଡ଼ ''ପ୍ରବନ୍ଧ ସଂକଳନ'' ଉନ୍ମୋଚନ ଦିବସ । ବାମରୁ (୧) ଶ୍ରୀ ପ୍ରସନ୍ନ କୁମାର ଦାଶ, (୨) ଶ୍ରୀ ଭାଗବତ ପ୍ରସାଦ ନନ୍ଦ, (୩) ଆଇନଜୀବି ଶ୍ରୀ ରାମ ପ୍ରସାଦ ମିଶ୍ର, (୪) ଡାକ୍ତର ରମାବଲ୍ଲଭ ମିଶ୍ର, (୫) ଅଧ୍ୟକ୍ଷ ପ୍ରଦୀପ କୁମାର ହୋତା ]



[ ଚିତ୍ର–୮ : କବି ଶଶିଭୂଷଣଙ୍କ କରୁଣ ମହାପ୍ରୟାଣ ତା. ୫।୬।୧୯୭୬ ମସିହା ପାଖରେ ଅଛନ୍ତି : ବାମରୁ (୧) ଲେଙ୍ଗୁ ମିଶ୍ର, (୨) ଦୁର୍ଗା ପ୍ରସାଦ ମିଶ୍ର, (୩) ବାଲ୍ମିକୀ ମିଶ୍ର, (୪) ଜଣେ ଛୋଟ ବାଳକ (ନାମକ ଅଜ୍ଞାତ) ]



[ ଚିତ୍ର–୧୦:ଅମ୍ବାଡ଼ୋନାରେ ରାଜ୍ୟସ୍ତରୀୟ ଗଙ୍ଗାଧର ସ୍ମୃତି ସମିତି, ବରଗଡ଼ ତରଫରୁ ସ୍ୱର୍ଗତ ଶଶିଭୂଷଣ ମିଶ୍ରଶର୍ମାଙ୍କୁ ପ୍ରଦତ୍ତ ଗଙ୍ଗାଧର ସମ୍ମାନ–୨୦୦୯ ତାଙ୍କର ଶିଷ୍ୟ ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ ପ୍ରସନ୍ନ କୁମାର ଦାଶ ଗ୍ରହଣ କରୁଛନ୍ତି । ୦୫।୦୮।୨୦୦୯ ପଦ୍ମଶ୍ରୀ ଶ୍ରୀଯୁକ୍ତ ଶ୍ରୀନିବାସ ଉଦ୍‌ଗାତା ଉପସ୍ଥିତ ଓ ଶିକ୍ଷକ ପ୍ରସନ୍ନ କୁମାର ଦାଶ । ]

Source: Author, Digitized by PPRACHIN, SOA

# ପ୍ରାକ୍‌ସୂଚନା

ଓଡ଼ିଆ ସାହିତ୍ୟକୁ ପଶ୍ଚିମ ଓଡ଼ିଶାର ଦାନ ଅବିସ୍ମରଣୀୟ ଓ ଅତୁଳନୀୟ । ପଶ୍ଚିମ ଓଡ଼ିଶା କୋଳରେ ବହୁ କବି, ମନୀଷୀ, ସନ୍ଥ, ସାରସ୍ୱତ ସ୍ରଷ୍ଟା ଜନ୍ମଲାଭ କରିଛନ୍ତି । ସେମାନେ ଏଇ ମାଟିରେ ଏଇ ପରିବେଶରେ ଜନ୍ମ ଲାଭକରି ନିଜେ ଯେପରି ଅମର ଓ କୀର୍ତ୍ତିମାନ୍ ହୋଇଛନ୍ତି ତଦ୍ରୂପ ଜନନୀ-ଜନ୍ମଭୂମିକୁ, ଭାଷା ଓ ସାହିତ୍ୟକୁ ପୁଣ୍ୟ ଓ ପବିତ୍ର କରିଯାଇଛନ୍ତି । ପଶ୍ଚିମ ଓଡ଼ିଶାର ଏଇ ମାଟିରେ ବିଖ୍ୟାତ୍ ସଂସ୍କୃତ କବି ପଣ୍ଡିତ ଗଙ୍ଗାଧର ମିଶ୍ର, ସନ୍ଥକବି ମହାତ୍ମା ଭୀମଭୋଇ, ସ୍ୱଭାବକବି ଗଙ୍ଗାଧର ମେହେର, ସାହିତ୍ୟ ପ୍ରାଣ କବି ଖଗେଶ୍ୱର ଶେଠ ଓ ଆହୁରି ଅନେକ ସାରସ୍ୱତ ସ୍ରଷ୍ଟା ଜନ୍ମଲାଭ କରି ନିଜ ନିଜର ଅମର କୀର୍ତ୍ତି ରଖି-ଯାଇଛନ୍ତି । ସେମାନେ ସମସ୍ତେ ଆମ ଦେଶ ଓ ଜାତିର ଚିରନ୍ତନ ନମସ୍ୟ ସାରସ୍ୱତ ପୁରୁଷ !

ଉତ୍କଳର ବାଣୀ କାସାରରେ ଯେଉଁ କେତୋଟି ସାରସ ପ୍ରସ୍ଫୁଟିତ ହୋଇଥିଲା ତନ୍ମଧ୍ୟରୁ ଆମର ପ୍ରିୟ ସାହିତ୍ୟସ୍ରଷ୍ଟା ଶଶିଭୂଷଣ ମିଶ୍ରଙ୍କ କାବ୍ୟକୃତି, ସାରସ୍ୱତ-ମହାର୍ଘ, ସାରସ୍ୱତ-ସୌରଭ ସମଗ୍ର ଉତ୍କଳକୁ ସୁରଭିତ, ମୁଗ୍ଧ ଓ ଲୁବ୍ଧ କରିଛି । ଯହିଁରେ ରସଲୁବ୍ଧ ଭ୍ରମରମାନେ ରସ ପାନ କରି ନିଜର ଜୀବନକୁ ଧନ୍ୟ ମଣିଛନ୍ତି । ଶଶିଭୂଷଣ ମିଶ୍ର ଓଡ଼ିଆ- ସାହିତ୍ୟରେ ଜଣେ ସଫଳ ସ୍ରଷ୍ଟା । ତାଙ୍କର ସୃଷ୍ଟି ପ୍ରତ୍ୟୟ ଅଭିନବ । ତାଙ୍କର ରଚନାବଳୀ ପାଠକଲେ ସେଗୁଡ଼ିକ ପାଠକ ପ୍ରାଣରେ ଗଭୀର ଆଲୋଡ଼ନ ସୃଷ୍ଟିକରି କାହିଁ କାହିଁ ମୁଗ୍ଧ-ଚକିତ-ବିସ୍ମୟାଭିଭୂତ କରିଦିଏ ।

ପ୍ରକୃତ କବି ବା ସାହିତ୍ୟିକ କେହି କାହା ସହିତ ତୁଳନୀୟ ନୁହନ୍ତି । ପ୍ରତ୍ୟେକ ନିଜ ନିଜ ପ୍ରଜ୍ଞା-ପ୍ରତିଭାରେ ଭାସ୍ୱର ସ୍ୱତନ୍ତ୍ର ଭାବରେ । ସାହିତ୍ୟିକ ଶଶିଭୂଷଣ ମିଶ୍ର ପ୍ରକୃତରେ ଜଣେ କବି ବୋଲି ମୁଁ ମନେ କରେ । ବିଦ୍ୟାଳୟରେ ଶିକ୍ଷାଦାନ ବ୍ୟତୀତ ନିଜର ସାଧନା ଓ ଅଧ୍ୟବସାୟ ବଳରେ ସେ ବହୁ ବିଷୟରେ ବହୁଜ୍ଞାନ ଅର୍ଜନ କରି ପାରିଥିଲେ । ସେହି ଜ୍ଞାନକୁ ଆଜିକାର ତଥାକଥିତ ବିଶ୍ୱବିଦ୍ୟାଳୟର କୌଣସି ଉଚ୍ଚ-ପଦବୀ ସହିତ ତୁଳନା କରାଯାଇ ନପାରେ । ତେଣୁ ସାରସ୍ୱତ ଉଚ୍ଚତାରେ ସେ କଅଣ ହେବେ, ସେ କଥା ମହାକାଳ ହିଁ ବିଚାର କରିବ । ବିଂଶ ଶତାବ୍ଦୀର ଆଦ୍ୟ ଓ ମଧ୍ୟ ଭାଗରେ ପଶ୍ଚିମ ଓଡ଼ିଶାର ଯେଉଁ ସାରସ୍ୱତ ସ୍ରଷ୍ଟାମାନେ ଲେଖନୀ ଚାଳନା କରିଥିଲେ, ସେମାନଙ୍କ ମଧ୍ୟରେ ଆମର

ବରେଣ୍ୟ ଓ ପ୍ରିୟ ସାହିତ୍ୟିକ ଶଶିଭୂଷଣ ମିଶ୍ରଶର୍ମା ଅନ୍ୟତମ । ଯାହାଙ୍କୁ ଆମେ ଓ ଆମର ପୂର୍ବବର୍ତ୍ତୀ ପିଢ଼ି ସସ୍ନେହ ସମ୍ବୋଧନରେ ଡାକି ଥାଉଁ "ବୁଢ଼ା ମାଷ୍ଟ୍ରେ" ! ଏହି ସମ୍ବୋଧନଟି ସତେ ଯେପରି ତାଙ୍କ ପାଇଁ ଯଥାର୍ଥ । ଏ ସଂପର୍କରେ ଶଶିଭୂଷଣ ମିଶ୍ରଙ୍କ ପ୍ରତିଭା ପୂଜକ ଶିକ୍ଷାବିଦ୍ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ ଯାହା ଲେଖିଛନ୍ତି ତାହା ଏଠାରେ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ଶ୍ରୀଯୁକ୍ତ ଦାଶ ଲେଖିଛନ୍ତି :

"ଏ ଧରଣର ଏକ ଶିରୋନାମା ହୁଏତ ଅନେକଙ୍କ ପାଇଁ ସୁପରିଚିତ, ଆଉ ଅନେକଙ୍କ ସକାଶେ ଅଜ୍ଞାତଭଳି ହୋଇପାରେ; କିନ୍ତୁ ଏ ଶିରୋନାମାରେ ରହିଛି ଏକ ବୈଶିଷ୍ଟ୍ୟ । ଏ ଶବ୍ଦ ଉଚ୍ଚାରଣ କଲାମାତ୍ରେ ଏକ ନିର୍ଦ୍ଦିଷ୍ଟ ରୂପ ଅନେକଙ୍କର ଦୃଷ୍ଟି-ସମକ୍ଷରେ ଉଦ୍ଭାସିତ ହୋଇଉଠେ । "ବୁଢ଼ାମାଷ୍ଟ୍ରେ" ! କହିଲେ ସାଧାରଣତଃ ଜର୍ଜ ହାଇସ୍କୁଲ, ବରଗଡ଼ର ପୂର୍ବତନ ଶିକ୍ଷକ ସ୍ୱର୍ଗତ ଶ୍ରୀ ଶଶିଭୂଷଣ ମିଶ୍ରଶର୍ମାଙ୍କୁ ଏ ଅଞ୍ଚଳରେ ବୁଝିଥାନ୍ତି ।" (ବରପୁତ୍ର – ୧୯୯୨, ପୃ.୧୮, ଗାନ୍ଧୀସ୍ମୃତି ପାଠାଗାର, ବରଗଡ଼) ।

ଶଶିଭୂଷଣଙ୍କ ସମକାଳୀନ ପଶ୍ଚିମ ଓଡ଼ିଶାର ଯେଉଁ ସାହିତ୍ୟିକ ମାନେ କିଛି ନା କିଛି ଲେଖାଲେଖି କରୁଥିଲେ, ସେମାନଙ୍କ ମଧ୍ୟରେ ଥିଲେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ, ପଣ୍ଡିତ ରାଘବ ମିଶ୍ର, କବି ବ୍ରଜମୋହନ ପଣ୍ଡା, କବିପୁତ୍ର ଭଗବାନ ମେହେର, କବି ଦୟାନିଧି ମିଶ୍ର, ଡାକ୍ତର ଜନାର୍ଦ୍ଦନ ପୂଜାରୀ, କବି ଖଗେଶ୍ୱର ଶେଠ, କବି ଖଗେଶ୍ୱର ସାହୁ, ଶଙ୍କର ପ୍ରସାଦ ପାଢ଼ୀ, କବି ସତ୍ୟନାରାୟଣ ବହିଦାର, କବି ଇନ୍ଦ୍ରମଣି ତ୍ରିପାଠୀ ଓ ସାହିତ୍ୟିକ ଶ୍ରଦ୍ଧାକର ସୂପକାର ପ୍ରମୁଖ ।

ଜଣେ ଆଦର୍ଶ ଶିକ୍ଷକ, ଜଣେ ଆଦର୍ଶ ଶିକ୍ଷାବିଦ୍, ଜଣେ ସୁସାହିତ୍ୟିକ ଓ ସୁ-କବି ଭାବରେ ଶଶିଭୂଷଣ ମିଶ୍ର ଆଜି ଆମ ଆଗରେ ତାଙ୍କର ପରିଚୟ । ତାଙ୍କ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ରହିଛି ନୂତନ ସ୍ୱାକ୍ଷର । ସେ ସଂକୀର୍ଣ୍ଣମନା ନ ଥିଲେ; ଥିଲେ ବ୍ୟାପକ ଓ ଗଭୀର ଅନୁଭୂତିର ମଣିଷ । ଏକ ଶୁଦ୍ଧ, ସଚେତନ, ପବିତ୍ର ଓ ଆଦର୍ଶ ପରିବେଶରେ ତାଙ୍କର ଜୀବନ-ଯାତ୍ରା ଆରମ୍ଭ ହୋଇଥିଲା । ଶିକ୍ଷକ ଜୀବନର ଗଭୀର ଅନୁଭୂତି ସଙ୍ଗେ ନିରନ୍ତର କାବ୍ୟଚର୍ଚ୍ଚା ଏବଂ ସାରସ୍ୱତ ଶିକ୍ଷା ତାଙ୍କ ଜୀବନ ଓ ପ୍ରତିଭାକୁ ଶୀର୍ଷ ସ୍ଥାନରେ ପହଞ୍ଚାଇ ଦେଇ ପାରିଥିଲା । ସାହିତ୍ୟିକ ଶଶିଭୂଷଣ ମିଶ୍ରଙ୍କ ଜୀବନ ଓ କାବ୍ୟ ପ୍ରତିଭାକୁ ଏପରି ତିନୋଟି ଭାଗରେ ବିଭକ୍ତ କରାଯାଇପାରେ :

(୧) ୧୮୯୬ –୧୯୧୮ : ଆଦ୍ୟପର୍ବ

(୨) ୧୯୧୮ – ୧୯୪୨ : ପ୍ରତିଷ୍ଠା ପର୍ବ

(୩) ୧୯୪୨ – ୧୯୭୬ : ଅନ୍ତିମ ପର୍ବ

# ଆବିର୍ଭାବ

ଶଶିଭୂଷଣଙ୍କ ଜନ୍ମ ହୁଏ ସମ୍ବଲପୁର ଜିଲ୍ଲାର ବରଗଡ଼ ସବ୍‌ଡିଭିଜନ୍‌ର "ତାଳଶ୍ରୀଗିଡ଼ା" ନାମକ ଏକ କ୍ଷୁଦ୍ର ପଲ୍ଲୀରେ ତା ୨୫-୩-୧୮୯୬ ମସିହା, ବୁଧବାର ଦିନ। ତାଙ୍କ ପିତାଙ୍କ ନାମ ପଣ୍ଡିତ ହରିହର ମିଶ୍ରଶର୍ମା ଓ ମା'ଙ୍କ ନାମଥିଲା 'ଗୁଣ୍ଡିଚା ଦେବୀ'। ଶଶିଭୂଷଣଙ୍କ ପୂର୍ବପୁରୁଷ ପ୍ରକୃତରେ ବରଗଡ଼ ସନ୍ନିକଟ 'ଅଡଗାଁ' ଗ୍ରାମର ବାସିନ୍ଦା ଥିଲେ। ପରେ ତାଙ୍କ ପିଉସୀ ରୁକ୍ମିଣୀ ଦେବୀ ତାଳଶ୍ରୀଗିଡ଼ାରେ ବିବାହ କରିବାରୁ ପିଉସୀଙ୍କ ଶ୍ୱଶୁରଙ୍କ ଅନୁରୋଧରେ ଶଶିଭୂଷଣଙ୍କ ପିତାମହ ଗୋପୀନାଥ ମିଶ୍ର ଅଡ଼ଗାଁରୁ 'ତାଳ ଶ୍ରୀଗିଡ଼ା'କୁ ସପରିବାର ଚାଲିଆସି ବସବାସ କରିଥିଲେ। ଏହି ତାଳଶ୍ରୀଗିଡ଼ା ଗ୍ରାମରେ କବି ଶଶିଭୂଷଣଙ୍କ ଜନ୍ମ। ଶଶିଭୂଷଣ ମିଶ୍ର ନିଜର ଅସଂପୂର୍ଣ୍ଣ ଆତ୍ମଚରିତରେ ତାଙ୍କ ବଂଶଲତା ସଂପର୍କରେ ଉଲ୍ଲେଖ କରି କହିଛନ୍ତି :

> "××× ଶୁଣିବାକୁ ପାଇଲି ଯେ ଆମ୍ଭର ବଂଶର ପୂର୍ବପୁରୁଷ ମାନେ ପ୍ରଥମେ ଅଡ଼ଗାଁରେ ଥିଲେ । ଏବେ ସୁଦ୍ଧା ଆମ୍ଭ ବଂଶର ଏକ ଅଂଶ ଅଡ଼ଗାଁରେ ରହୁଛନ୍ତି। ପଣ୍ଡିତ ରାଘବମିଶ୍ର ଓ ସମ୍ବଲପୁରର ଆଡ୍‌ଭୋକେଟ୍ ଶ୍ରୀ ଅନିରୁଦ୍ଧ ମିଶ୍ର ମୋର କକା ଏବଂ ସେମାନେ ଏବେ ଅଡ଼ଗାଁରେ ଅଛନ୍ତି।
>
> ତାଳଶ୍ରୀଗିଡ଼ା ଗୌନ୍ତିଆ କୃଷ୍ଣଦାଶଙ୍କ ବଡ଼ପୁଅ ବୃନ୍ଦାବନ ଦାଶଙ୍କ ସଙ୍ଗେ ମୋର ପିଉସୀ ରୁକ୍ମିଣୀ ଦେବୀଙ୍କ ବିବାହ ସମ୍ପର୍କ ହେବାରୁ କୃଷ୍ଣଦାସ ତାଙ୍କ ସମ୍ବନ୍ଧୀ ମୋର ବୁଢ଼ାବାପା ଗୋପୀନାଥ ମିଶ୍ରଙ୍କୁ ତାଳଶ୍ରୀଗିଡ଼ା ଆସିବାକୁ ଅନୁରୋଧ କଲେ। ବୁଢ଼ାବାପା ଅଡ଼ଗାଁର ଜମିବାଡ଼ି ଛାଡ଼ି ଦେଇ ତାଳଶ୍ରୀଗିଡ଼ା ଆସିଗଲେ।
>
> କୃଷ୍ଣଦାଶ ବାଲ୍‌କୀ ଦାଶଙ୍କ ପୁଅ। ବରଗଡ଼ ସରକାରୀ ଡାକ୍ତରଖାନାର ସମ୍ମୁଖରେ ଯେଉଁ ପାଠାଗାର ଅଛି ତାର ନାମ ଏହି ବାଲ୍‌କୀ ଦାଶଙ୍କ ନାମ ମିଶାଇ "ବାଲ୍‌କୀ ପାଠାଗାର" ରଖାଗଲା। ସେ ବଡ଼ ପାର୍‌ବାର୍ ଲୋକ ଥିଲେ। ୮୪ ଖଣ୍ଡ ମୌଜାର ଚାଷ ଏକା ସମ୍ଭାଳୁ ଥିଲେ। ଗଣ୍ଡ ଦମନ ପାଇଁ ଇଂରେଜମାନଙ୍କୁ ଭିତରେ ଭିତରେ ସାହାଯ୍ୟ କରୁଥିବାର ଖବର ପାଇ ଗଣ୍ଡମାନେ ତାଙ୍କୁ ଦିନ ଦ୍ୱିପହରରେ ହାଣି ପକାଇଲେ। ତାର ଫଳରେ ବାଲ୍‌କୀଦାଶଙ୍କ ବଂଶଧରମାନଙ୍କୁ ଇଂରେଜ ସରକାର ବରଗଡ଼ ଗ୍ରାମ "ମୁଣ୍ଡକଟା ମାଫି" ନାମରେ ନିଷ୍କର ଭୋଗ କରିବାକୁ ତାମ୍ରପଟା ସହ ଦେଲେ। ବାଲ୍‌କୀ ଦାଶଙ୍କ ପୁଅମାନଙ୍କ ଭିତରେ କୃଷ୍ଣଦାଶ ବେଶି ବଳୁଆ ଥିଲେ। ତାଳଶ୍ରୀଗିଡ଼ାର ମୋକଦ୍ଦମା ବୁଝିବାକୁ ସରକାରଙ୍କ ଠାରୁ ସେ ଅଧିକାର ପାଇଥିଲେ ଏବଂ କଚେରୀ ଭଳିଆ ଏକ ଘର ତୋଳିଥିଲେ। ଏବେ ସୁଦ୍ଧା ତାଙ୍କୁ

କଚେରୀ ଢବା କହନ୍ତି । ପରେ ଡାକ ବିଭାଗକୁ ଲେଖି ଗାଁରେ ଗୋଟିଏ ଚିଠିପକା ଢୋଲ (Letter's Box) ଝୁଲାଇ ଥିଲେ । ବରଗଡ଼ ପୋଷ୍ଟମ୍ୟାନ୍ ତାଳଶ୍ରୀଗିଡ଼ା ଯାଇ ସେ ଚିଠିପତ୍ର ମାନ ଆଣେ ।''

(ଅପ୍ରକାଶିତ ଆତ୍ମ-ଚରିତ, ପୃ. ୧ ଓ ୨)

ପଶ୍ଚିମ ଓଡ଼ିଶାର ଅନ୍ୟତମ ସାହିତ୍ୟିକ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଉପରୋକ୍ତ ବର୍ଣ୍ଣିତ ବାଲ୍‌କୀ ଦାଶଙ୍କ ସଂପର୍କରେ "କର୍ମବୀର ବାଲ୍‌କୀ ଦାଶ" (ପ୍ରଥମ ସଂସ୍କରଣ-୧୯୫୭, ନବଜୀବନ ପ୍ରେସ୍, କଟକ-୨) ଶୀର୍ଷକ ଖଣ୍ଡିଏ ଜୀବନୀ ପୁସ୍ତକ ରଚନା କରିଥିଲେ । ସେହି ପୁସ୍ତକରେ ବାଲ୍‌କୀଦାଶଙ୍କ ସମ୍ବନ୍ଧରେ ସବିଶେଷ ବର୍ଣ୍ଣିତ ହୋଇଛି ।

ପଣ୍ଡିତ ହରିହର ମିଶ୍ରଙ୍କ ପାଞ୍ଚଟି ସନ୍ତାନ ଥିଲେ । ସେମାନେ – (୧) କପର୍ଦ୍ଦିକିଙ୍କର (୨) ଶଶିଭୂଷଣ, (୩) ମଞ୍ଜୁପ୍ରଭା, (୪) ଇନ୍ଦିରା ଏବଂ (୫) ଇନ୍ଦୁମତୀ । ଅର୍ଥାତ୍ କବି ଶଶିଭୂଷଣଙ୍କ ଜଣେ ବଡ଼ଭାଇ ଓ ତିନିଜଣ ସାନ ଭଉଣୀ ଥିଲେ । କବିଙ୍କ ତିନି ଭଉଣୀ – 'ମଞ୍ଜୁପ୍ରଭା' କରଡ୍ଢୋଲା-ଖିଣ୍ଡା ଗୌନ୍ତିଆ (ମହାପାତ୍ର) ଘରେ ବିବାହ । ଦ୍ୱିତୀୟ ଭଉଣୀ 'ଇନ୍ଦିରା'–ଗାଇସୀମା ଷଡ଼ଙ୍ଗୀ ଘରେ ବିବାହ । ସାନ ଭଉଣୀ 'ଇନ୍ଦୁମତୀ'– କମ୍‌ଗାଁ ମହାପାତ୍ର ଘରେ ବିବାହ କରି ସର୍ବସୁଖରେ ଜୀବନଯାପନ କରିଥିଲେ । ଶଶିଭୂଷଣଙ୍କ ପିତା ପଣ୍ଡିତ ହରିହର ମିଶ୍ର ଥିଲେ ସଂସ୍କୃତ ସାହିତ୍ୟର ଜଣେ ନାଁ କରା ପଣ୍ଡିତ । ସେ ମଧ୍ୟ ଆଜୀବନ ଶିକ୍ଷକ ଥାଇ ଅନେକ ଉପାଦେୟ କାବ୍ୟ-କବିତା ରଚନା କରିଥିଲେ । ସେଗୁଡ଼ିକ ହେଲା :

**(କ) ପ୍ରକାଶିତ ରଚନା :**

(୧) ଅମର ପ୍ରାର୍ଥନା–(୧୯୨୭) ଉତ୍କଳ ସାହିତ୍ୟ ପ୍ରେସ୍, କଟକ

(୨) ରାଘବ ବିଜୟ – (୧୯୨୯) ଆଶା ପ୍ରେସ୍, ବ୍ରହ୍ମପୁର

(୩) ଗୋଚାର ସିଦ୍ଧି – (୧୯୭୨) ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର

**(ଖ) ଅପ୍ରକାଶିତ ରଚନା :**

(୧) କବିତା କଦମ୍ବ
(୨) ଜରାସନ୍ଧବଧ
(୩) ମଦନତନ୍ତ୍ର ସାର
(୪) ସଙ୍ଗୀତ କୁମୁଦାକର
(୫) କିଶୋର ବିଚ୍ଛେଦ
(୬) କିଶୋରୀ ବିଚ୍ଛେଦ
(୭) ସୁଭଦ୍ରା ରୋଦନ
(୮) ପତିବ୍ରତା ଧର୍ମ
(୯) ପତିସେବା ବ୍ରତମାଳା
(୧୦) ରସିକବିଳାସ ତରଙ୍ଗିଣୀ

ପଣ୍ଡିତ ହରିହର ମିଶ୍ର କେବଳ ଜଣେ ଭଲ ସାହିତ୍ୟିକ ଥିଲେ, ତା' ନୁହେଁ ସେ ଜଣେ ଉତ୍କୃଷ୍ଟ କବିରାଜ ଏବଂ ରୋଷେଇ କାର୍ଯ୍ୟରେ ମଧ୍ୟ ତାଙ୍କର ଅତି ଦକ୍ଷତା ଥିଲା । ତାଙ୍କର ସମକାଳୀନ ଓଡ଼ିଶାର ସମସ୍ତ ସାହିତ୍ୟିକଙ୍କ ସହିତ ତାଙ୍କର ସଂପର୍କ ସ୍ଥାପିତ ହୋଇ ପାରିଥିଲା ।

## ପ୍ରାଥମିକ ଶିକ୍ଷା

କବି ଶଶିଭୂଷଣ ତାଙ୍କର ପ୍ରାଥମିକ ଶିକ୍ଷା କିଭଳି ଲାଭ କରିଥିଲେ, ସେ ସଂପର୍କରେ ସୂଚନା ଦେଇ ଲେଖିଛନ୍ତି :

"ତାଳଶ୍ରୀଗିଡ଼ାରେ ଆଗେ ଗୋଟିଏ ପ୍ରାଥମିକ ସ୍କୁଲ ଥିଲା ପରା । ମୋର ବଡ଼ ଦଦେଇ ନବଘନ ମିଶ୍ର ତହିଁରେ କିଛି ଦିନ ଶିକ୍ଷକତା କରିଥିଲେ; ପରେ କିନ୍ତୁ ସ୍କୁଲଟି ଉଠିଗଲା । ମୋର ଦାଦା (କପର୍ଦ୍ଦକିଙ୍କର ମିଶ୍ର) ଓ ମୋର ପଢ଼ିବା ସମୟ ବେଳକୁ ଗାଆଁରେ ସ୍କୁଲ ନଥିଲା । ଏଣେ ବୁଢ଼ାବାପା ଓ ବୁଢ଼ୀମା'ଙ୍କ ଖାଇବା ପିଇବାରେ ଅସୁବିଧା ହେବ ବୋଲି ମୋର ପିତା ତାଙ୍କର ପରିବାରକୁ ତାଙ୍କର ଚାକିରି କରୁଥିବା ସ୍ଥାନକୁ କେବେ ନେବାର ପସନ୍ଦ କରୁ ନ ଥିଲେ ବା କେବେ ନେଇ ନଥିଲେ । ଗୁଡ଼ିତଳ ପଡ଼ା ଅର୍ଜୁନଦାଶ (ମାନ୍ୟରେ ମୋର ଅଜା ହେବେ) ଗାଆଁର କେତେ ପିଲାଙ୍କୁ ଅକ୍ଷର ଶିକ୍ଷାଦେଇ 'କେଶବ କୋଇଲି', 'ଗୋପୀଭାଷା', 'ମଥୁରା ମଙ୍ଗଳ', 'ଭାଗବତ' (ଏକାଦଶ ସ୍କନ୍ଧ) ପଢ଼ାଉଥିଲେ ଏବଂ ଯେ ଅଧିକ ଶିଖିବାକୁ ଚାହୁଁଥିଲା ତାକୁ 'ଅମରକୋଷ' ଅଭିଧାନ ଘୋଷାଉ ଥିଲେ । ସେ ସମୟରେ ଅକ୍ଷର ଶିକ୍ଷା ନିମ୍ନମତେ କରାଉଥିଲେ । ପ୍ରତ୍ୟେକ ପିଲା ଗୋଟିଏ ଗୋଟିଏ ଟୁପୁଲିରେ ଲାଲ୍ ମାଟି ବା ଇଟାର ବାରିକ ଗୁଣ୍ଡ, ଗୋଟିଏ ପାଖ ଚୋକ କରି ଛଞ୍ଚା ହୋଇଥିବା ଗୋଟିଏ କାଠି ଏବଂ ଗୋଟିଏ ପିଣ୍ଢା ବା ପଟା ଆଣୁଥିଲେ । ପଟାରେ ଲାଲ୍‌ମାଟି ଗୁଣ୍ଡ ସମାନ ଭାବରେ ବିଛାଇ ଦେଇ କାଠିରେ ଅକ୍ଷର ଲେଖୁଥିଲେ । ସେତେବେଳେ 'ସିଦ୍ଧିରସ୍ତୁ' ଏଚାରି ଅକ୍ଷର ଆଗ ଶିଖାଉଥିଲେ । ତା' ପରେ 'ଅ' ଧାଡ଼ି ('ଅ'ରୁ 'ଠ'), 'ଡ' ଧାଡ଼ି ('ଡ' ରୁ 'ଭ') ଓ 'ମ' ଧାଡ଼ି ('ମ' ରୁ 'କ୍ଷ') ଶିଖାଉଥିଲେ । ମାତ୍ର ସ୍କୁଲ୍ ମାନଙ୍କରେ 'ଅ' ଧାଡ଼ି ପ୍ରଥମେ ଶିଖାଉ ଥିଲେ । ଆମ୍ଭର ସ୍କୁଲରେ ପଢ଼ିବାର ଥିବାରୁ ବାପା ଏହି ଧରଣରେ ଆମ୍ଭର ଅକ୍ଷର ଶିକ୍ଷା କରାଇବାକୁ ବୁଢ଼ାବାପାଙ୍କୁ କହିଲେ । ମୋର ଦାଦା ମୋ'ଠାରୁ ପ୍ରାୟ ତିନିବର୍ଷ ବଡ଼, ତେଣୁ ତାଙ୍କର ପଢ଼ା ଆଗ ଆରମ୍ଭ ହେଲା । ମାତ୍ର କିଛିଦିନ ପରେ ମୁଁ ତାହାଙ୍କୁ ପହୁଞ୍ଚାଇ ଦେଲି । ଇଟାଗୁଣ୍ଡ, କାଠି ଓ ପିଢ଼ା ସାହାଯ୍ୟରେ ଆମର ଅକ୍ଷର ଶିକ୍ଷା, ଅକ୍ଷର ପରିଚୟ, ମାତ୍ରାଦିଆ ଓ ଯୁକ୍ତବର୍ଣ୍ଣ ଗଠନ ହୋଇଯିବା ପରେ ଇଟାଗୁଣ୍ଡ, କାଠି ଓ ପିଢ଼ାକୁ ବିଦାୟ ଦିଆଗଲା ।''

(ଅପ୍ରକାଶିତ ଆତ୍ମଚରିତ, ପୃ. ୨୯-୩୦)

ତାଳଶ୍ରୀଗିଡ଼ା ପରେ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା ବରଗଡ଼ ସ୍କୁଲରେ । ଶିକ୍ଷକ ଥିଲେ କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ମହାଶୟ । ଛାତ୍ର ଶଶିଭୂଷଣଙ୍କ ସାହିତ୍ୟରେ

ଯେତିକି ଦକ୍ଷତା ଥିଲା, ତା'ଠାରୁ ଆହୁରି ପ୍ରବେଶ ଥିଲା ଗଣିତରେ । ଗଣିତରେ ଯେଉଁ ଛାତ୍ରମାନେ ଭଲ ନମ୍ବର ରଖି ପାସ୍ କରୁଥିଲେ, କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ସେହି ଛାତ୍ରମାନଙ୍କୁ ନିଜ ଦରମାରୁ ପୁରସ୍କୃତ କରୁଥିଲେ ଏବଂ ଉକ୍ତ ଉତ୍ସାହମୂଳକ ପୁରସ୍କାର ଛାତ୍ର ଶଶିଭୂଷଣ କ୍ରମାଗତ ଭାବରେ ପାଇ ଆସିଥିଲେ । ବରଗଡ଼ରେ ପ୍ରାଥମିକ ଶିକ୍ଷା ଶେଷ କଲାପରେ ସମ୍ବଲପୁର ଜିଲ୍ଲାସ୍କୁଲରେ ତାଙ୍କର ନାମ ଲେଖାହୁଏ । ଜିଲ୍ଲା ସ୍କୁଲର ନବମ ଶ୍ରେଣୀ ଛାତ୍ର ଥିବା ବେଳେ ୧୯୧୩ ସାଲରେ ସମ୍ବଲପୁରର ଫ୍ରେଜର୍ କ୍ଲବ୍‌ରେ ଆଶୁକବି ଶ୍ରୀ ବାଲାଜୀ ମେହେର "ଗୁଣିଆ ଗୀତ୍'' ଗାନ କଲେ । ତାକୁ ଶୁଣି ନୋଟ୍‌ବୁକ୍‌ରେ ଟିପି ରଖିଥିଲେ । ପାଠକ-ପାଠିକାଙ୍କ ସକାଶେ ଏଠାରେ "ଗୁଣିଆ ଗୀତ୍"କୁ ଉଦ୍ଧାର କରାଗଲା । ଶ୍ରୀ ବାଲାଜୀ ମେହେର ଲେଖିଥିଲେ : ଗୁଁଡ଼ିଆ ଗୀତ୍

ଘର୍ ଦୁଆର୍ ତାଁଡ୍ ଖୁଲି
ବେଲ୍ ବୁଡ୍‌ଲେଁ ଗୁଁଡ଼ିଆର୍ ପାଲି ॥
ଗୁବର୍ ଗଦା ଉର୍‌କୁଲା
ତହିଁକି ଗୁଁଡ଼ିଆ ମିଲ୍‌କିଲା ॥
ପୋଢ୍ ଛାପ୍‌ରେଁ ପୁରାପୁରା
ବସିଥିସନ୍ ତରା ତରା ॥
ପୋଢ୍ ପାନିଁ ଦେଲେଁ ବୁଡ଼ି
ଉଡ୍‌ସନ୍ ତେତ୍‌କେଁ ଆଶା ଛାଡ଼ି ॥

ଗୁଁଡ଼ିଆର୍ କନିଆଁ ଦୁଇଗୋଟି
ଘୁନ୍‌ଘୁଟି ଆଉର୍ କୁର୍‌କୁଟି ॥
ସେଦିନ୍ ତାଁକର୍ ମଁଗଲ୍‌ବାର୍
ଦେବୀକେ ଦେବେ ରକତ୍‌ଧାର୍ ॥
ନାଇଁ ଆନ୍‌ଲେଁ ନାଇଁ ଚଲେ
ଗୁଁଡ଼ିଆ ଗଲା ରାଏତ୍ ବେଲେଁ ॥
ଗାୟ ଗୁହାଲେଁ ଗୁଁଡ଼ିଆ ବିଜେ
ଆଗେଁ ଘୁନ୍ ଘୁନ୍ ଘଁଟି ବାଜେ ॥
ଗାୟ ଗୁହାଲେଁ କୁହୁଲା ଦିଆ
ଗୁଁଡ଼ିଆ ବୟଲା ନାଇଁରେ ବୁଆ ॥
ବସ୍‌ଲେଁ ମଲିଁ ରକତ୍ ଭୁଗୀ
ଜୀବନ୍ ଯିବା ମାଏଝି ଲାଗି ॥

ଯେ ଗାଳିଦେଲେଁ ଦଉଥିବେ
ଘରେଁ ପଛେଁ ନାଇଁ ରହି ଦେବେ ॥
ଉଞ୍ଚା ମାଏଝି କର୍‌ମି ପଛେଁ
ଜୀବନ୍ ଯିବା ମିଛେଁ ମିଛେଁ ॥
କୁହୁଲା ଘର୍ ମତେ ଅଡୁଆ
ଏନ୍ତା ବିଚାରେଁ ଉଡ଼୍‌ଲା ଗୁଁଡ଼ିଆ ॥

ଯାଇ ପସ୍‌ଲା ଲୁକର୍ ଭିଳିଁ
ଠାନ୍ ଜାନି ଜାନି ହୁଁଗ୍‌ମି ବଳିଁ ॥
ଝନେ ବସିଥିଲା ପଛ୍ କରି
ଚୁତ୍‌ଲେଁ ବସ୍‌ଲା ଲଥ୍ କରି ॥
ଲମ୍ ଲମ୍ ଗୋଡ୍ ଲପ୍ ଲପ୍
ମୁଁହୁଁ ସୂଜି ହୁଁଗେ ଟପ୍ ଟପ୍ ॥
ଝନେ ହାୟ କରି ଥାପର୍ ପିଟି
ଧରିକରି ଦେଲା ସଏଲ୍‌ତା ବଟି ॥
ଦର୍ ବୁଜ୍‌କିଆ ନାଇଁ ବାଜ୍‌ଲା
ବାଜ୍‌ଲେଁ କି ଆଉର୍ ଜୀବନ୍ ଥିଲା ?
ଗଲା ତର୍‌ସର୍ ଜାନ୍ ଧରି
ଗୁଁଡ଼ିଆ କନିଆଁ କାନ୍ ଧରି ॥
ମଁଗ୍‌ଲା ଦେବୀର୍ ଉଷା ବରତ୍
ଆଏଜ୍ ତ ନାଇଁ ମିଲ୍‌ଲା ରକତ୍ ॥
ଯାହା ପାଏଲୁ ଖାଏଲୁ ସବୁ
ଆଉ କି ଖାଏବୁ ପର୍‌ଶି ଦେବୁଁ ॥
ନାଆଁକୁ ମରଦ୍ ଗଁଡ଼ିଆଟା
ଦୁଇ ମାଏଝିର୍ ଉଡୁଆଟା ॥
ସଁଗେଁ ଶୁଇକରି ଗର୍‌ଗଡୁ
ତୋର୍ ଘଏତା ହେବାର୍ ମୁଁହଁ ପୁଡୁ ।"

ଗୁଁଡ଼ିଆ ବଏଲା, "ଶୁନ୍‌ଲୋ ନଟୀ
ଦେଇଥିଲା ଯେନ୍ ଚାପର୍ କୁଟି ॥
ନାଇଁ ବାଜିକରି ପଡ଼୍‌ଲିଁ ଢଳି

ତିନ୍‌ଘଡ଼ି ଯାଏ ମୂରୁଛା ଗଲିଁ ॥
ପାଁଚ୍ ଘଡ଼ି କେ ପାଏଲିଁ ଚେତା
ମରି ଯାଇଥିଲେଁ କେନ୍‌ତା ହେତା ॥
ଭଁଗା ଧୁନ୍‌ମାଏଲେଁ କାଁଡ଼୍
ଘଏତା ମଲେଁ ମାଏପୋ ରାଁଡ଼୍ ॥
ଆନ୍‌ଲେଁ ରକତ୍ ପିତଲ୍ ପିତଲ୍
ପି ଦଉଥିତ ବୁତଲ୍ ବୁତଲ୍ ॥
ମାଏଝି ଜନମ୍ ହେବାର ସାଫୁଲ୍
ଖାଇ ଜାନ୍‌ତ କାପୁଲ୍ କାପୁଲ୍ ॥
ଘର୍ ଛାଡ଼ି ଆଏଜ୍ ପଲାମି
ସବୁ ଦିନ୍ କାହୁଁ ଦେମି ଆନି ॥
ମାଏପୋ ଜାନି ଘଏତା ହିତ୍
ବାଲାଜୀ ରଚନା ଗୁଁଡ଼ିଆ ଗୀତ୍ ॥"

ଶଶିଭୂଷଣ ମିଶ୍ରଙ୍କ ହାତଲେଖା ନୋଟ୍
(*ତଥ୍ୟ ସଂଗ୍ରହ*– ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ଼ ।

କେବଳ ସେତିକି ନୁହେଁ, କବି ଶ୍ରୀ ମେହେରଙ୍କ ରଚିତ "ଗଉଡ଼ ଗମନ'' "କୁଁଭାର ପସ୍‌ରା" ଏବଂ "ସୁନାରୀ ପସ୍‌ରା" ପ୍ରଭୃତି କବିତା ସହିତ ଆହୁରି ଅନ୍ୟ ଲେଖକମାନଙ୍କ ପ୍ରାଚୀନ ସମ୍ବଲପୁରୀ କବିତାଗୁଡ଼ିକ ଶୁଣିବାକୁ ପାଇଥିଲେ । (କବି ବାଲାଜୀ ମେହେର ହେଉଛନ୍ତି ସମ୍ବଲପୁର ଜିଲ୍ଲା– ଅତାବିରା ଥାନାନ୍ତର୍ଗତ 'ବନହର୍' ନାମକ ଗ୍ରାମର ବାସିନ୍ଦା । ଏହି ଗ୍ରାମଟି ବନ୍ଦା-ଖରମୁଣ୍ଡା ପାଖରେ ଅବସ୍ଥିତ ।) ଫଳରେ ସମ୍ବଲପୁରୀ ଭାଷା ଓ ସାହିତ୍ୟ ଆଡ଼କୁ ତାଙ୍କର କୈଶୋର ପ୍ରାଣ ଏକାନ୍ତ ଭାବେ ସମର୍ପିତ ହେବାକୁ ଲାଗିଥିଲା । ବାଲ୍ୟକାଳରୁ ତାଙ୍କଠାରେ କବି ପ୍ରତିଭାର ଆଦ୍ୟ ଉନ୍ମେଷ ଘଟିଥିଲା ।

## ପୂର୍ବେ ଓଡ଼ିଆ ଭାଷାର ଚିତ୍ର :

ଶଶିଭୂଷଣଙ୍କ ଆବିର୍ଭାବ (୧୮୯୬) ହେବାର ଅଳ୍ପକାଳ ପୂର୍ବରୁ ଅର୍ଥାତ୍ ୧୮୯୧ ମସିହାରେ ଉପକୂଳିଆ ଓଡ଼ିଆଭାଷୀମାନେ ପଶ୍ଚିମ ଓଡ଼ିଶା, ବିଶେଷକରି ସମ୍ବଲପୁରର ସାଧାରଣ ଜନତାଙ୍କର ଭାଷା ସମ୍ବଲପୁରୀ ଭାଷାକୁ ଗୋଟିଏ କଦର୍ଯ୍ୟ ଓଡ଼ିଆ ଭାଷା ବୋଲି ହୀନଚେଷ୍ଟା ପୂର୍ବକ କିପରି ଅପପ୍ରଚାର କରିଥିଲେ, ତାର ଏକ ନମୁନା ଦେବଗଡ଼ରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର "ସମ୍ବଲପୁର ହିତୈଷିଣୀ" ରେ ଦେଖିବାକୁ ମିଳେ । ଉପକୂଳିଆ ଓଡ଼ିଆ ଭାଷୀ ସଂପାଦକ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ମହାଶୟ ଲେଖିଥିଲେ :

## ପ୍ରାଚୀନ କବିତା

"ସମ୍ବଲପୁର ବିଭାଗର ମାତୃଭାଷା ଓଡ଼ିଆ ହେଲେହେଁ ତାହା ନିତାନ୍ତ କଦର୍ଯ୍ୟ ଦଶାପନ୍ନ, ବର୍ତ୍ତମାନ ଭଦ୍ର ସମାଜର ଭାଷା କିଞ୍ଚିତ ଉନ୍ନତି ଲାଭ କରିଅଛି ସତ୍ୟ, ମାତ୍ର ନିମ୍ନ ଶ୍ରେଣୀର ଲୋକମାନଙ୍କର ଭାଷା ପୂର୍ବପରି କଦର୍ଯ୍ୟ ରହିଅଛି । ବର୍ତ୍ତମାନ ସମ୍ବଲପୁରୀ ଭାଷାରେ ରଚିତ ଗୋଟିଏ ପ୍ରାଚୀନ କବିତା ବନ୍ଧୁଙ୍କ ନିକଟରୁ ପାଇ ପାଠକ ମାନଙ୍କ ଅବଗତାର୍ଥେ ଏଠାରେ ପ୍ରକାଶ କଲୁଁ ।

କହ ଗୋ ଦୂତୀ ମୁଇଁ କେନ୍ତା କର୍‌ସି ଗୋ ।
ନନ୍ଦ ପୁଓ କାହ୍ନାକେ ଦେଖିଲେ ବଡ଼ା କାବା ଲାଗ୍‌ସି ଗୋ ॥ ଘୋଷା ॥

ଦିଶୁ ଥାଏସି କଲିଆ ଟର୍‌ଟର୍
ପିନ୍ଧି ଥାଏସ୍ ହଳ୍‌ଦି ଜର୍‌ଜର୍
ଧୋବ୍ ଫର୍‌ଫର୍ ଟେ, ଜନ୍ କରିଆ ଗୁଟେ
ବେକେ ଉଳେଇ ଆଏସି ଗୋ (୧)

ଯମୁନା ନଦୀକେ ଗାଧେଇ ଗଲେ
ବସି ଥାଏସି କଦମ୍ ତଲେ,
ଦେଖ୍‌ଲେ ଧାଏଁସି
ସାଙ୍ଗେ ଗାଧେଇ ବସ୍‌ସି ଗୋ" । (୨)

(ସମ୍ବଲପୁର ହିତୈଷିଣୀ–୩/୧୫, ତା ୨୩-୯-୧୮୯୧)

ଏହି ପ୍ରସଙ୍ଗ ଉପରେ ଆଲୋଚନା କରି ପଣ୍ଡିତ ଡ. ନୀଳମାଧବ ପାଣିଗ୍ରାହୀ ଯାହା ଲେଖିଛନ୍ତି, ତାହା ଏଠାରେ ଅଧିକ ଗୁରୁତ୍ୱପୂର୍ଣ୍ଣ । ଶ୍ରୀ ପାଣିଗ୍ରାହୀ ଲେଖିଛନ୍ତି :

"ଏ କବିତାର ଭାଷା ଯଦି କଦର୍ଯ୍ୟ ଓଡ଼ିଆ ବୋଲି ବିଜ୍ଞ ସଂପାଦକ ଭାବିଲେ ତେବେ କଦର୍ଯ୍ୟ ଅଂଶକୁ ସଂଶୋଧନ କରି, କବିତାକୁ ସୌନ୍ଦର୍ଯ୍ୟ ସମ୍ପନ୍ନକରି କଦର୍ଯ୍ୟ କବିତାଟିର ତଳେ ଅଲଗାଭାବେ ଛପେଇ ଦେଇ ପାରିଥିଲେ ହୁଏତ ଜଣା ପଡ଼ିଥାଆନ୍ତା ଯେ କବିତାର ଭାଷା ବାସ୍ତବିକ କଦର୍ଯ୍ୟ ଓଡ଼ିଆ ଭାଷା । ମାତ୍ର ତାହା ନକରି କବିତାଟିକୁ ସେ ଯେପରି କଦର୍ଯ୍ୟ ଭାବେ ଭୁଲ୍ ଭାଲ୍ କରି ଛପେଇଛନ୍ତି ତହିଁରୁ ମନେହୁଏ ଯେ କବିତାର ଭାଷା ତାଙ୍କ ପକ୍ଷେ ଥିଲା ଅବୋଧ; କାରଣ, ସମ୍ବଲପୁରୀ ଏକ ସ୍ୱତନ୍ତ୍ର ଭାଷା, ଯାହା ଓଡ଼ିଆ ଭାଷାଭାଷୀ ପକ୍ଷେ ସାଧାରଣତଃ ଅବୋଧ ।"
(ଓଡ଼ିଶାରେ ଉପକୂଳିଆ ପ୍ରବେଶ କେବେ ଓ କାହିଁକି ? – ୧୯୯୨, ପୃ.୨୭)
ଓଡ଼ିଆ ସାହିତ୍ୟର ଇତିହାସରେ ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ଘଟିଯାଇଥିଲା ।

ସମ୍ବଲପୁରର ପଣ୍ଡିତ ଧରଣୀଧର ମିଶ୍ରଙ୍କ ଭଳି ହିତାକାଂକ୍ଷୀ ଓ କବି ଗଙ୍ଗାଧର ମେହେରଙ୍କ ଭଳି ଲେଖକଙ୍କ ମାନସିକ ସ୍ଥିତିକୁ କେତେକାଂଶରେ ପ୍ରତ୍ୟକ୍ଷ ନହେଲେ ବି' ପରୋକ୍ଷ ଭାବରେ ବଦଳାଇ ଦେଇଥିଲା ।

## ଛାତ୍ର ଜୀବନ :

ଛାତ୍ର ଜୀବନରେ ନିଜର ମେଧା ଶକ୍ତି ବଳରେ ସେ ଅସାମାନ୍ୟ କୃତିତ୍ୱ ଅର୍ଜନ କରିଥିଲେ । ଛାତ୍ର ଥିବାବେଳେ ପ୍ରତିବର୍ଷ ପ୍ରଥମ ହୋଇ ପାସ୍ କରିବା ତାଙ୍କ ପକ୍ଷରେ ଗୋଟିଏ ମାମୁଲି ବିଷୟ ହୋଇଥିଲା । ନିଜର ବିବେକ ଓ ବୁଦ୍ଧି ବଳରେ ସେ ଛାତ୍ରମହଲରେ, ଶିକ୍ଷକମାନଙ୍କ ପାଖରେ ଅସାଧାରଣ ପ୍ରତିଷ୍ଠା ଲାଭ କରିପାରିଥିଲେ । ୧୯୧୫ ମସିହାରେ ଛାତ୍ର ଶଶିଭୂଷଣ ସମ୍ବଲପୁର ଜିଲ୍ଲା ସ୍କୁଲ୍‌ରୁ ମେଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଇଥିଲେ । ମେଧା ତାଲିକାରେ ତାଙ୍କର ନାଁ ସମସ୍ତଙ୍କ ଆଗରେ ଥିଲା । ତାଙ୍କ ସହିତ ଯେଉଁ ଛାତ୍ରମାନେ ପାସ୍ କରିଥିଲେ ସେମାନେ ହେଲେ :

(1) Sasibhusan Misra.
(2) Bipin Bihari Pujari.
(3) Sachitananda Purohit.
(4) Sapneswar Barik.
(5) Sudhansu Mohan Bhattacharya.
(6) Sribatsha Panda.
(7) Lingaraj Meher.
(8) Achutananda Purohit.
(9) Nakuleswar Gartia.
(10) MD Siddique Khan.
(11) Sudarsan Naik.
(12) Damodar Hota.
(13) Satrughna Pradhan.
(14) Bhagiratha Misra.
(15) Ananda Ch. Pati.
(16) Basanta Kumar Bohidar.
(17) Bhismadev Biswal.
(18) Arjun Panda.
(19) Gangadhar Churia.

(20) Siba Prasad Deb.
(Chandrasekhar Zila School,
Sambalpur Centenary Souvenir–1965)

ପୁଣି ୧୯୧୭ ମସିହାରେ ରେଭେନ୍‌ସା କଲେଜରୁ ପ୍ରଥମ ଶ୍ରେଣୀରେ ଆଇ.ଏସ୍.ସି. ପରୀକ୍ଷାରେ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ ପିତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ଉଚ୍ଚଶିକ୍ଷାରୁ ବଞ୍ଚିତ ହେଲେ । ତାଙ୍କର ଉଚ୍ଚଶିକ୍ଷା ସଂପର୍କରେ ଆଲୋଚନା କଲାବେଳେ ଏଠାରେ ଦୁଇଟି କଥା ମନରେ ସ୍ୱତଃ ଉଙ୍କିମାରେ । ପ୍ରଥମତଃ, ଛାତ୍ର ଶଶିଭୂଷଣ ବି.ଏସ୍.ସି ପଢ଼ିବାକୁ କଲିକତା କିମ୍ବା ଭାରତ ବାହାରକୁ ଯାଇଥିଲେ ସେଠାକାର ସାହିତ୍ୟିକ ବାୟୁମଣ୍ଡଳ ତାଙ୍କ ଚିନ୍ତାଶକ୍ତିର ବିକାଶ ଧାରାକୁ ପରିବର୍ତ୍ତନ କରିପାରିଥାନ୍ତା କି ନାହିଁ ତାହା ଘୋର ସନ୍ଦେହ । ଦ୍ୱିତୀୟତଃ, ସେଠାକାର ସାହିତ୍ୟିକମାନଙ୍କ ଚିନ୍ତାଧାରା ସଂସ୍ପର୍ଶରେ ଆସି ତାଙ୍କର କାବ୍ୟଶିଳ୍ପ ଓ ବିଜ୍ଞାନ ଚେତନା ଉନ୍ନତ ଅଥବା ମାର୍ଜିତ ହୋଇଥାନ୍ତା କି ନାହିଁ, ତାହା ମଧ୍ୟ ନିଶ୍ଚିତ ନୁହେଁ ।

## ଶିକ୍ଷକ ଜୀବନ :

ମାତ୍ର ଏକୋଇଶ-ବାଇଶ ବର୍ଷ ବୟସରେ ଯୁବକ ଶଶିଭୂଷଣଙ୍କ କର୍ମ ଜୀବନ ଆରମ୍ଭ ହୁଏ । ୧୯୧୭ ମସିହାରେ ବରଗଡ଼ ଜର୍ଜ ହାଇସ୍କୁଲର ସହକାରୀ ଶିକ୍ଷକ ଭାବରେ ସେ ଯୋଗଦାନ କଲାପରେ ଦୁଇବର୍ଷ ପାଇଁ ବରପାଲି ଏମ୍. ଭି. ସ୍କୁଲ୍‌ରେ କାମ କରିଥିଲେ । ସେତେବେଳେ ସ୍ୱଭାବକବି ଗଙ୍ଗାଧର ମେହେର ବରପାଲି ସ୍କୁଲରେ ସଂପାଦକ ଥାଆନ୍ତି । ଶଶିଭୂଷଣଙ୍କ ଭଳି ଜଣେ ଉତ୍ସାହୀ ତଥା ଯୋଗ୍ୟ ଶିକ୍ଷକଙ୍କୁ ସେଠାରେ ନିଯୁକ୍ତି ଦେବାଲାଗି ପଣ୍ଡିତ ରାଘବ ମିଶ୍ର ତଥା ଶ୍ରୀ ବାଲୁଙ୍କେଶ୍ୱର ମିଶ୍ର ବି.ଏ.ବି.ଏଲ୍. ଗଙ୍ଗାଧରଙ୍କୁ ଉଚିତ ପରାମର୍ଶ ଦେଇଥିଲେ । ବରପାଲି ସ୍କୁଲରୁ ପୁଣି ବରଗଡ଼ ଜର୍ଜ ହାଇସ୍କୁଲକୁ ତାଙ୍କର ବଦଳି ହୋଇଛି । ଏ ସଂପର୍କରେ ଶ୍ରୀ ମନବୋଧ ମେହେରଙ୍କ ରଚିତ "ଗଙ୍ଗାଧର ମେହେର" ନାଟକର ଚତୁର୍ଥ ଅଙ୍କରେ ଉଲ୍ଲେଖ ଅଛି :

ଦୃଶ୍ୟ

(ବରପାଲି ମି:ଇ: ସ୍କୁଲ କୋଠରୀ)

ମଧ୍ୟରେ ଟେବୁଲ, ଚତୁର୍ଦ୍ଦିଗରେ ଚୌକି, ପାର୍ଶ୍ୱରେ ୨ଟି ଲମ୍ବା ବାକ୍‌ସ ରହିଥିବା ।

ପ୍ରେସିଡେଣ୍ଟ–ସୂର୍ଯ୍ୟୋଦୟ ସିଂହ, ସେକ୍ରେଟେରୀ – ଗଙ୍ଗାଧର ମେହେର ଯାଇ ଲମ୍ବା ବାକ୍‌ସରେ ବସିବା) ।

ମେମ୍ବର ସୁନ୍ଦର ଥଇତ୍, ନରୋତ୍ତମ ସାହୁ, କାହ୍ନାଦାସ, କାଶୀନାଥ ସାହୁ, କାମପାଳ ଗୌନ୍ତିଆ, ଗୟାଧର ଦାସ ନିଜ ନିଜ ସ୍ଥାନରେ ବସିଥିବା ।

ପ୍ରସ୍ତାବ–ଶ୍ରୀ ମଦନମୋହନ ପ୍ରଧାନଙ୍କୁ ସୋହେଲା ବଦଳି ହୋଇଅଛି । ଶଶିଭୂଷଣ ମିଶ୍ରଙ୍କୁ ବରଗଡ଼ରେ ନିଯୁକ୍ତି ହୋଇଅଛି । ଏମାନଙ୍କ ସ୍ଥାନରେ ବାଲେଶ୍ୱରର ରାମପ୍ରସାଦ ପାଢ଼ୀ ଓ ମନବୋଧ ସାହୁ (ସତଲମା) ଦରଖାସ୍ତ କରିଛନ୍ତି । କଅଣ କରାଯିବ ?

ସମସ୍ତେ ଉତ୍ତର–ନିଯୁକ୍ତି କରାଯାଉ ।

ଗଙ୍ଗାଧର– ସର୍ବସମ୍ମତି କ୍ରମେ ରାମପ୍ରସାଦ ପାଢ଼ୀଙ୍କୁ ମାସିକ ଟ. ୫୦/- ବେତନରେ ଏବଂ ଶ୍ରୀ ମନବୋଧ ସାହୁଙ୍କୁ ମାସିକ ଟ. ୨୦/- ବେତନରେ ନିଯୁକ୍ତ କରାଗଲା । (ସମସ୍ତେ ସ୍ୱାକ୍ଷର କରିବାପରେ ।)

ଯବନିକା ପତନ

*

ବରପାଲିରୁ ବଦଳି ହୋଇ ପୁଣି ୧୯୧୯ ମସିହାରେ ବରଗଡ଼ ଜର୍ଜହାଇସ୍କୁଲରେ ସହକାରୀ ଶିକ୍ଷକ ଭାବରେ ସେ ଯୋଗଦାନ କଲେ । ଶିକ୍ଷାଦାନ କରିବାହିଁ ତ ତାଙ୍କର ପ୍ରଥମ ଓ ପ୍ରଧାନ ଉଦ୍ଦେଶ୍ୟ ଥିଲା, ତେଣୁ ଅତି ଅଳ୍ପ ସମୟ ମଧ୍ୟରେ ସେ ଜଣେ ଅଭିଜ୍ଞ ଶିକ୍ଷକ ଭଳି ନିଜର ବ୍ୟକ୍ତିତ୍ୱକୁ, ନିଜର ମାନବିକତାକୁ, ନିଜେ ଅର୍ଜନ କରିଥିବା ଜ୍ଞାନକୁ ସେଠାକାର ଛାତ୍ର, ଶିକ୍ଷକ ଓ ସାଧାରଣ ଜନତାଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ, ନିଜକୁ ପ୍ରତିଷ୍ଠା କରି ପାରିଥିଲେ । ତେଣୁ ସେ ପରବର୍ତ୍ତୀ କାଳରେ ବରଗଡ଼ରେ ହୋଇଗଲେ ସମସ୍ତଙ୍କର ପ୍ରିୟ ମଣିଷଟିଏ, ଜ୍ଞାନୀ ପୁରୁଷଟିଏ । ସମସ୍ତେ ତାଙ୍କୁ ସମ୍ବୋଧନରେ ଡାକିଲେ "ବୁଢ଼ାମାଷ୍ଟ୍ରେ!" ଶଶିଭୂଷଣଙ୍କ ଶିକ୍ଷାୟତନରେ ଜ୍ଞାନ ପ୍ରସାର କରିବା ସଙ୍ଗେ ସଙ୍ଗେ ଛାତ୍ରମାନଙ୍କ ଜୀବନରେ ଗଭୀର ଆଦର୍ଶ ଓ ରୁଚିବୋଧ ସୃଷ୍ଟି କରିବା ଯେପରି ଆମକୁ ଦୃଷ୍ଟିଗୋଚର ହୋଇଥାଏ, ତାହା ତାଙ୍କର ସମକାଳୀନ ଅନ୍ୟାନ୍ୟ ଶିକ୍ଷକମାନଙ୍କଠାରେ ଏକାନ୍ତ ଦୁର୍ଲ୍ଲଭ । କୌଣସି ଛାତ୍ରପ୍ରତି ଶିକ୍ଷାଲାଭ ଓ ଜ୍ଞାନ ବିତରଣ ପାଇଁ ସେ ଅବହେଳା କରିବାର ପକ୍ଷପାତୀ ନ ଥିଲେ । ଛାତ୍ରମାନଙ୍କ ହୃଦୟରେ ଉତ୍ତମ ଶିକ୍ଷାର ସଂଚାର କରିବା ଥିଲା ତାଙ୍କର ପ୍ରଥମ କାର୍ଯ୍ୟ । ଛାତ୍ରମାନଙ୍କୁ ଟ୍ରେନିଂଦେଇ ସେମାନଙ୍କ ବୌଦ୍ଧିକ ଉନ୍ନତି, ଚାରିତ୍ରିକ ମହତ୍ତ୍ୱକୁ ଫୁଟାଇବାକୁ ସେ ଯେଭଳି ଗଭୀର ଧ୍ୟାନ ଦେଇଥିଲେ, ସେହିଭଳି ନିଜେ ମଧ୍ୟ ନିଜର ଜୀବନକୁ ବଳିଷ୍ଠ ଓ ମହତ୍ କରିପାରିଥିଲେ । ତାଙ୍କର ସମଗ୍ର ଜୀବନ ଅତିବାହିତ ହୋଇଥିଲା ଗଭୀର ଅଧ୍ୟୟନରେ, ସୂକ୍ଷ୍ମ ଚିନ୍ତନ ଓ ମନନରେ ଏବଂ ଶିକ୍ଷାଦାନରେ । ଶିକ୍ଷାୟତନରେ ଆଜୀବନ ଶିକ୍ଷକ ରହିବା ତାଙ୍କର ଶିକ୍ଷକ ଜୀବନର ଅନନ୍ୟ ଚିତ୍ତତା ଆମପାଇଁ ବିଶେଷ ଲକ୍ଷଣୀୟ । ଏକ ଦିଗରେ କାବ୍ୟ ଚର୍ଚ୍ଚା ସହିତ ଅନ୍ୟ ଦିଗରେ ତାଙ୍କର କଠିନ ଗାଣିତିକ ସମସ୍ୟାର ପରିପୂର୍ଣ୍ଣ ସମାଧାନ ଓ ଉଚ୍ଚକୋଟୀର ବିଜ୍ଞାନ ଚେତନା ମଧ୍ୟ ଆମକୁ ସ୍ମରଣ କରାଇଦିଏ । ତାଙ୍କ ଭଳି ଜଣେ ପୂର୍ଣ୍ଣ ବିଦ୍ୱାନ୍, ସଂପୂର୍ଣ୍ଣ ଶିକ୍ଷାବିଦ୍ କ୍ୱଚିତ୍

ଦେଖାଯାନ୍ତି । ଆମ୍ଭେ "ପୂର୍ଣ୍ଣବିଦ୍ୱାନ୍" ବୋଇଲେ କ'ଣ ବୁଝିବା ? ଅଥବା "ପୂର୍ଣ୍ଣ ବିଦ୍ୱାନ୍"ଙ୍କ ସହିତ ଆମର ସଂପର୍କ କଅଣ ଓ କାହିଁକି ? ଏ ସଂପର୍କରେ "ଯଜୁର୍ବେଦ"ରେ ଗୋଟିଏ ଶ୍ଳୋକ ଅଛି :

"ଇମଂ ଦେବା ଅସପତ୍ନଗୁଁ ସୁବଧ୍ୱଂ ମହତେ କ୍ଷତ୍ରାୟ ମହତେ ।
ଜ୍ୟୈଷ୍ଠାୟ ମହତେ ଜାନ ରାଜ୍ୟାୟେନ୍ଦ୍ର ସ୍ୟେନ୍ଦ୍ରାୟ ॥" (ଯଜୁର୍ବେଦ: ଅଂ ୯/୪୦)

**ଭାଷ୍ୟାର୍ଥ :–** ହେ (ଦେବାଃ) ରାଜା, ପ୍ରଜାଦି ବିଦ୍ୱଜ୍ଜନ ବୃନ୍ଦ ! ଅର୍ଥାତ୍ ଯେଉଁ ବ୍ୟକ୍ତି ନ୍ୟାୟବାନ୍ ନିଷ୍ପକ୍ଷପାତ, ପୂର୍ଣ୍ଣ ବିଦ୍ୱାନ୍ ଅର୍ଥାତ୍ ସଭ୍ୟ, ସୁଶିକ୍ଷିତ ଏବଂ ସବୁଲୋକଙ୍କର ହିତୈଷୀ ବନ୍ଧୁ ସ୍ୱରୂପ; ତାହାଙ୍କୁ ହିଁ ତୁମ୍ଭେମାନେ ସର୍ବଶ୍ରେଷ୍ଠ ସଭାପତି, ରାଜ୍ୟ ଅର୍ଥାତ୍ ଶାସକ ଓ ଚକ୍ରବର୍ତ୍ତୀ ରୂପରେ ସ୍ୱୀକାର କର । ତେବେ ଯାଇ ତୁମ୍ଭେମାନେ ଜଗତରେ ସାମ୍ରାଜ୍ୟ ସ୍ଥାପନ କରିପାରିବ, ଐଶ୍ୱର୍ଯ୍ୟବାନ୍ ହୋଇ ପାରିବ ଏବଂ ଶତ୍ରୁଶୂନ୍ୟ ହୋଇ ପାରିବ; ଅର୍ଥାତ୍ ସର୍ବତ୍ର ଜୟଯୁକ୍ତ ହୋଇପାରିବ ।"

ଶଶିଭୂଷଣଙ୍କ ସ୍ନେହଶୀଳ ହୃଦୟ ତାଙ୍କର ଛାତ୍ରମାନଙ୍କ ଜୀବନକୁ ଯେପରି ସରସ, ସୁନ୍ଦର, ମଧୁମୟ କରିପାରିଛି, ତାଙ୍କର ଲେଖନୀ ମଧ୍ୟ ଓଡ଼ିଆ ସାହିତ୍ୟକୁ ସେପରି ପରିପୁଷ୍ଟ କରିଛି । ଆଜୀବନ ଶିକ୍ଷକ ଶଶିଭୂଷଣଙ୍କ ଶିକ୍ଷାଦାନ ଏହି ଓଡ଼ିଆ ଜାତିପ୍ରତି ଯେପରି ଅବିସ୍ମରଣୀୟ ବିସ୍ମୟ ସେପରି ଅତୁଳନୀୟ । ତାଙ୍କର କାବ୍ୟ-ରଚନା ଦିଗରେ ଶିକ୍ଷାଦାନ ଅନ୍ତରାୟ ସୃଷ୍ଟି କରିଥିଲା ବୋଲି କହିଲେ ଯଥାର୍ଥ ହେବନାହିଁ । ଶିକ୍ଷାୟତନରେ ରହିବାଦ୍ୱାରା ସେ ବହୁ ବିଷୟରେ, ବହୁ ଦିଗରେ ଟିକି ନିକି ପରୀକ୍ଷା-ନିରୀକ୍ଷା କରିଛନ୍ତି । ଫଳରେ ତାଙ୍କର ସୃଷ୍ଟିପ୍ରତ୍ୟୟ ଏଭଳି ଉର୍ଦ୍ଧ୍ୱରୁ ଉର୍ଦ୍ଧ୍ୱତର ହୋଇ ପାରିଛି । ତାଙ୍କର ଉଚ୍ଚ ସମର୍ପିତ ଶିକ୍ଷକ ଜୀବନର ଆଉ ଗୋଟିଏ କଥା ମନକୁ ସ୍ୱତଃ ଆସିଥାଏ; ତାହା ହେଉଛି– ଶଶିଭୂଷଣ ଚାକିରି ଜୀବନରେ 'ସହକାରୀ-ଶିକ୍ଷକ' ପଦ ବ୍ୟତୀତ ଶିକ୍ଷାବିଭାଗର ଅନ୍ୟ-କୌଣସି ଉଚ୍ଚ ପଦ-ପଦବୀକୁ ଯାଇ ପାରିନଥିଲେ ବା ସେଥିପାଇଁ ସେ କୌଣସି ଚେଷ୍ଟା ସୁଦ୍ଧା କରି ନ ଥିଲେ । କିନ୍ତୁ ସର୍ବଦା ସାଧୁତା ରକ୍ଷା ଥିଲା ତାଙ୍କ ଜୀବନର ଲକ୍ଷ୍ୟ ।

ଛାତ୍ରମାନଙ୍କୁ ଶିକ୍ଷାଦାନ ବ୍ୟତୀତ ସ୍କୁଲରେ "ପ୍ରତିବିମ୍ବ" ନାମରେ ଏକ ଦୈନିକ ହାତଲେଖା ପ୍ରାଚୀର ପତ୍ରିକା ଶଶିଭୂଷଣ ସଂପାଦନା କରୁଥିଲେ । ଏହି ପ୍ରାଚୀର ପତ୍ରିକା– "ପ୍ରତିବିମ୍ବ"ରେ ଶଶିଭୂଷଣଙ୍କ ଅନେକ ଉପାଦେୟ ଲେଖା ପ୍ରକାଶିତ ହୋଇ ତାଙ୍କୁ ଅଶେଷ ଖ୍ୟାତି ଆଣି ଦେଇଥିଲା । ଏହି ପତ୍ରିକା ଥିଲା ଛାତ୍ର ମାନଙ୍କ ପାଇଁ ସତେ ଯେପରି ଜ୍ଞାନ ଓ ପ୍ରେରଣାର ଉତ୍ସ । ସେତେବେଳେ "ଚେତାବନୀ" ଶୀର୍ଷକ ଏକ ଦୀର୍ଘ କବିତା ମଧ୍ୟ ଏଥିରେ ପ୍ରକାଶ ପାଇଥିଲା । ଏହି କବିତାର ସାରକଥା ଏହି ଯେ, ପରୀକ୍ଷାରେ କପିରୁ ଛାତ୍ରମାନଙ୍କୁ ବାରଣ କରିବା ନିମନ୍ତେ ଲେଖକଙ୍କର କବିତା ମାଧ୍ୟମରେ ଶୁଭ ପ୍ରୟାସ, ସଦୁଦ୍ୟମ ଓ ଶୁଭଚିନ୍ତା । "ଚେତାବନୀ" କବିତାରେ ଲେଖିଛନ୍ତି :

"ଲେଖରେ ଭାଇ ଯାହା ଜାଣ । କଦାପି ନ ଦିଅ, ନ ଆଣ । ୧ ।
ସାଧୁତା କାର୍ଯ୍ୟସିଦ୍ଧି ମୂଳ । ବସାଏ ସମୁନ୍ନତି ଚୂଳ । ୨ ।
ଏକଥା କରି ସୁମରଣ । ପଥ ନହୁଡ଼ ଅକାରଣ । ୩ ।
ଅସିଦ୍ଧି ଦିଏ ସିଦ୍ଧି ଶେଷେ । ନକର ଭ୍ରମ ଏଥି ଲେଶେ । ୪ ।
ଅପଥେ ଗଲେ କିନ୍ତୁ ଭାଇ । ପଡ଼ିବ ସର୍ବନାଶେ ଯାଇ । ୫ ।
ଅସାଧୁ ଗିରି କରି ଲୋକେ । ବଡ଼ ହେଲେଣି କାହିଁ ଥୋକେ ? । ୬ ।
ଆପାତ ମଧୁର ତ ଫଳ । ଦି'ଦିନ କରାଏ ଚଞ୍ଚଳ । ୭ ।
ଦି ଦିନ ଦିଏ ରାଜଭୋଗ । ପଛେ ରୋଗାଏ ରାଜରୋଗ । ୮ ।

× × ×

ଏସବୁ ମିଛ ମାୟା ଭାଇ । ସତ କେବଳ ରମା ସାଇଁ । ୧୯ ।
ସତ କେବଳ ନାମ ଗାନ । ସତ ପ୍ରାର୍ଥନା ନୁହେ ଆନ । ୨୦ ।
ଏଣୁ ବିଶ୍ୱେଶ ପଦ ଧରି । ପରୀକ୍ଷା ସିନ୍ଧୁ ଯାଅ ତରି । ୨୧ ।

(ପୁନରାଗଚ୍ଛ ସିଦ୍ଧାର୍ଥ – ୨୦୦୨, ପୃ. ୫୯-୬୦) ।

ଶିକ୍ଷକ ଜୀବନର ମଧ୍ୟଭାଗରେ ସେ ଗଙ୍ଗାଧର ଓ ଗୋପବନ୍ଧୁଙ୍କ ଜୀବନୀ ଓ ସାହିତ୍ୟ, ତ୍ୟାଗ ଓ ଆଦର୍ଶ ଉପରେ ବହୁଭାବରେ ପ୍ରଭାବିତ ତଥା ଅନୁପ୍ରାଣିତ ହୋଇ ଥିବାର ଜଣାପଡ଼େ । ଗଙ୍ଗାଧରଙ୍କ "ତପସ୍ୱିନୀ" ଓ ଗୋପବନ୍ଧୁ ଦାଶଙ୍କ "ବନ୍ଦୀର ଆତ୍ମକଥା" ଏହି ଉଭୟ କାବ୍ୟଗ୍ରନ୍ଥ ଶଶିଭୂଷଣଙ୍କୁ ବିଶେଷଭାବେ ଆକୃଷ୍ଟ କରିଥିଲା । ତେଣୁ ସେ ସ୍ୱତଃ ପ୍ରବୃତ୍ତ ଭାବେ ଉଭୟ କାବ୍ୟର ଇଂରାଜୀ ଅନୁବାଦ କରିଛନ୍ତି । ପରବର୍ତ୍ତୀ ସମୟରେ ତାଙ୍କର ଶିକ୍ଷକ ପରିବେଶ, ସାମାଜିକ ଜୀବନ ଓ ଚାରିତ୍ରିକ ମହତ୍ତ୍ୱ ଓ ସ୍ୱଭାବ ସ୍ୱତନ୍ତ୍ର ଭାବେ ଫୁଟି ଉଠିଛି । ସାହିତ୍ୟିକ ଡକ୍ଟର୍ ମାୟାଧର ମାନସିଂହ, ଗଙ୍ଗାଧର ଓ ଗୋପବନ୍ଧୁଙ୍କୁ ଐଶ୍ୱର୍ଯ୍ୟମୟ ବ୍ୟକ୍ତିତ୍ୱ ରୂପେ ଆକଳନ କରିଛନ୍ତି । ତେଣୁ ଆମେ ମଧ୍ୟ ସାହିତ୍ୟିକ ମାନସିଂହଙ୍କ ଭାଷାରେ ଶଶିଭୂଷଣ ମିଶ୍ରଶର୍ମାଙ୍କୁ ଉତ୍କଳର ଜଣେ ଐଶ୍ୱର୍ଯ୍ୟମୟ ବ୍ୟକ୍ତିତ୍ୱ ବୋଲି କହି ପାରିବା । ଏଥିରେ ସନ୍ଦେହର କୌଣସି ଅବକାଶ ନାହିଁ ।

ଶଶିଭୂଷଣଙ୍କ ସମୟରେ ବରଗଡ଼ ଜର୍ଜ ହାଇସ୍କୁଲର ଯେପରି ସୁନାମ, ସୁଖ୍ୟାତି ରହିଥିଲା, ସେଥିରେ ଯେକୌଣସି ବ୍ୟକ୍ତି, ପ୍ରଶାସକ କିମ୍ବା ଅନୁଷ୍ଠାନ ଆକୃଷ୍ଟ ହେବା ସ୍ୱାଭାବିକ । ବରଗଡ଼ ଜର୍ଜହାଇସ୍କୁଲ ପରିଦର୍ଶନ କରି ଓଡ଼ିଶାର ତତ୍କାଳୀନ ବିଭାଗୀୟ ସ୍କୁଲ ଇନିସ୍ପେକ୍ଟର ମହାଶୟ ଅତ୍ୟନ୍ତ ମୁଗ୍ଧ ଓ ପ୍ରୀତ ହୋଇଥିଲେ । ଜର୍ଜହାଇସ୍କୁଲର ସୁଖ୍ୟାତି ସଂପର୍କରେ ସମ୍ବଲପୁରରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର "ଉତ୍କଳ ସେବକ" ଘୋଷଣା କରି ଲେଖିଥିଲା :

"ବିଭାଗୀୟ ସ୍କୁଲ ଇନ୍ସପେକ୍ଟର୍ ସାହେବ ମହୋଦୟ ସ୍ଥାନୀୟ ସ୍କୁଲମାନ ପରିଦର୍ଶନ

କରି ବରଗଡ଼ ଅଭିମୁଖରେ ଯାତ୍ରା କରିଥିଲେ । ସାହେବ ମହୋଦୟ ସେଠା ସ୍ଥାନୀୟ ଜର୍ଜହାଇସ୍କୁଲ ଓ ସେ ଅଞ୍ଚଳର ଅନ୍ୟାନ୍ୟ କେତେକ ସ୍କୁଲ ପରିଦର୍ଶନ କରି ଟାଉନକୁ ଫେରି ଆସିଥିଲେ । ତତ୍ପରେ ଏଠାକାର କେତେକ ମିଃ. ଇଃ. ସ୍କୁଲ ଓ ପ୍ରାଇମେରୀ ସ୍କୁଲ ଆଗ୍ରହ ସହକାରେ ଦେଖିଥିଲେ । ସର୍ବଶେଷରେ ଡିଷ୍ଟ୍ରିକ୍ଟ ଇନ୍ସପେକ୍ଟରଙ୍କ ଅଫିସ୍ ପରିଦର୍ଶନ କରି ସେଠା କାର୍ଯ୍ୟକଳାପରେ ସନ୍ତୁଷ୍ଟ ହୋଇ ଗତ ତା ୨୧ରିଖ ଗୁରୁବାର ଗାଡ଼ିରେ କଟକ-ଯାତ୍ରା କଲେ । ସାହେବ ମହୋଦୟ ଜଣେ ଜ୍ଞାନୀ ଓ ସୁବିବେଚକ ବୋଲି ଆମ୍ଭେମାନେ ଅନେକଙ୍କ ମୁଖରୁ ଶୁଣୁଅଛୁଁ । ଏହିପରି କର୍ତ୍ତୃପକ୍ଷଙ୍କ ଦ୍ୱାରା ଶିକ୍ଷା ବିଭାଗର ଉନ୍ନତି ହେବ ବୋଲି ଆଶା କରୁଁ ।''

(ଉତ୍କଳ ସେବକ – ୮/୩୩ : ତା ୨୮-୭-୧୯୨୧ ଗୁରୁବାର)

ତାଙ୍କର ଚାକିରୀକାଳ ହେଉଛି ନିମ୍ନରେ ଏହିପରି :-

(୧) ବରଗଡ଼ ଜର୍ଜ ହାଇସ୍କୁଲ – ତା ୫.୧୧.୧୯୧୭ରୁ ତା. ୧୨.୨.୧୯୧୮ ।

(୨) ବରପାଲି ମି: ଇ: ହାଇସ୍କୁଲ–ତା ୧୩.୨.୧୯୧୮ରୁ ତା. ୫.୧୧.୧୯୧୯ ।

(୩) ବରଗଡ଼ ଜର୍ଜ ହାଇସ୍କୁଲ– ତା ୬.୧୧.୧୯୧୯ରୁ ତା. ୧୬.୧୨.୧୯୬୭ ।

(ଇସ୍ତଫା ପ୍ରଦାନ)

## ବିବାହ ଓ ଗୃହ ସଂସାର

ତାଙ୍କର ଚିଠିପତ୍ର ଓ ସମକାଳୀନ ପାରିବାରିକ ଇତିହାସରୁ ଜଣାପଡ଼େ ଯେ, ଯେତେ ଦୂର ସମ୍ଭବ ୧୯୨୪ ମସିହା ପୂର୍ବରୁ ଶଶିଭୂଷଣଙ୍କ ବିବାହ କାର୍ଯ୍ୟ ସଂପନ୍ନ ହୋଇଥିଲା । ସେତେବେଳକୁ ସେ ବରଗଡ଼ ଜର୍ଜହାଇସ୍କୁଲର ଶିକ୍ଷକ । ଶଶିଭୂଷଣଙ୍କ ସ୍ତ୍ରୀଙ୍କ ନାମ ଥିଲା 'ନୀଳାବତୀ' ଓ ସେ ପାଞ୍ଚଟି ସନ୍ତାନର ଜନନୀ ଥିଲେ । ତନ୍ମଧ୍ୟରୁ ଚାରୋଟି ପୁତ୍ର ଓ ଏକମାତ୍ର କନ୍ୟା ସନ୍ତାନ । ଚାରିଜଣ ପୁତ୍ରଙ୍କ ନାମ ଥିଲା–ଯୋଗୀନ୍ଦ୍ର ମିଶ୍ର, ସରୋଜ ମିଶ୍ର, ଦୁର୍ଗାପ୍ରସାଦ ମିଶ୍ର, ଗୌରୀ ମିଶ୍ର । ତାଙ୍କର ପାରିବାରିକ ଜୀବନ ଥିଲା ଖୁବ୍ ଦୁର୍ବିସହ । ସବୁବେଳେ କିଛି ନା କିଛି ଅଶାନ୍ତି ଘଟୁଥିଲା । ୧୯୪୦ ମସିହାରେ ଶଶିଭୂଷଣଙ୍କ ଦୁଇଟି ପୁଅଝିଅ ଦୁଇ ଦିନ ଅନ୍ତରରେ ଅକାଳରେ ମୃତ୍ୟୁବରଣ କରିଥିଲେ । ତାଙ୍କ ସ୍ତ୍ରୀ ବାତୁଳୀ ହୋଇଗଲେ । ଫଳରେ ତାଙ୍କର ପାରିବାରିକ ଝଞ୍ଜାମାଡ଼ରେ ଶଶିଭୂଷଣ ଗଭୀର ଭାବେ ମର୍ମାହତ ପୂର୍ବକ କ୍ଷତବିକ୍ଷତ ହୋଇଥିଲେ । ଦୀର୍ଘଦିନରୁ ସଂଗୃହୀତ ଓ ସଂକଳିତ କରି ରଖିଥିବା ପ୍ରାୟ ୧୨୦୦ ବିଶୁଦ୍ଧ "ସମ୍ବଲପୁରୀ ପ୍ରବାଦ ସଂଗ୍ରହ''ର ପାଣ୍ଡୁଲିପିଟି ମଧ୍ୟ ଉଇଖାଇ ସଂପୂର୍ଣ୍ଣ ନଷ୍ଟ ହୋଇଗଲା । ୧୯୬୮ ମସିହାରେ ଶ୍ରୀଯୁକ୍ତ ନାରାୟଣ ପୃଷେଠ ପଦ୍ମପୁର ଅଞ୍ଚଳ କଲେଜର ଅଧ୍ୟାପକ ଥାଇ ସମ୍ବଲପୁରୀ ଲୋକଗୀତ ସଂଗ୍ରହ କାର୍ଯ୍ୟରେ ନିୟୋଜିତ ଥିବା ସମୟରେ ଶ୍ରୀ ଶଶିଭୂଷଣ ମିଶ୍ରଶର୍ମା ତାଙ୍କର ତା ୬-୩-୧୯୬୮ର

ଖଣ୍ଡିଏ ପତ୍ରରେ ଏହି ସମସ୍ତ ବିଷୟ ଉଲ୍ଲେଖ କରି ଲେଖିଥିଲେ । ପାରିବାରିକ ଜୀବନରେ ଘୋର କ୍ଷୟକ୍ଷତି ହେବା ସଙ୍ଗେ ସଙ୍ଗେ ସମ୍ବଲପୁରୀ ଭାଷା ଓ ସାହିତ୍ୟର ମଧ୍ୟ ଭୟଙ୍କର କ୍ଷତି ହେଲା । ଶିକ୍ଷକ ମିଶ୍ରଶର୍ମାଙ୍କ ସଂଗୃହୀତ ଓ ସଂକଳିତ "ସମ୍ବଲପୁରୀ ପ୍ରବାହ ସଂଗ୍ରହ" ଗ୍ରନ୍ଥଟି ପ୍ରକାଶିତ ହୋଇଥିଲେ ଓଡ଼ିଆ ଜାତିର ବିଶେଷ ସେବା କରିପାରିଥାନ୍ତା, ଏଥିରେ ସନ୍ଦେହ ନାହିଁ ।

ଶଶିଭୂଷଣ ମିଶ୍ର ଯେଉଁ ଚିଠି ଅଧ୍ୟାପକ ନାରାୟଣ ପୃଷେଠଙ୍କୁ ଲେଖିଥିଲେ ତାହା ପାଠକମାନଙ୍କ ଜାଣିବା ପାଇଁ ଅବିକଳ ଏଠାରେ ଉଦ୍ଧାର କରାଗଲା:

ଓଁତତ୍ସତ୍

ବରଗଡ଼

କଲ୍ୟାଣୀୟ ପ୍ରିୟ ନାରାୟଣ ବାବୁ – ଶୁଭାଶିଷ, ୬.୩.୬୮

ଆପଣଙ୍କ ଲିଖିତ ୨୫-୧-୬୮ର ପତ୍ର ମୁଁ ପାଇଥିଲେ ହେଁ ତାର ଉତ୍ତର ଦୀର୍ଘ ଚାଳିଶ ଦିନ ପରେ ଆଜି ଦେବାକୁ ପ୍ରସ୍ତୁତ ହୋଇଥିବାରୁ ପ୍ରଥମେ କ୍ଷମା ମାଗି ନେଉଛିଁ କାହିଁକିନା ଯେଉଁ କାରଣରୁ ଉତ୍ତର ଦେବାରେ ବିଳମ୍ବ ଘଟିଛି ତାହା ଲେଖିଲେ ମଧ୍ୟ କାହାକୁ ସନ୍ତୁଷ୍ଟ କରିହେବାର ସମ୍ଭାବନା ନାହିଁ । ତିନୋଟି କାରଣ ମଧ୍ୟରୁ ପ୍ରଥମ ହେଉଛି- ସେ ସମୟରେ ବେକ ପାଖରେ ହୁକ ପଶିଥିବାରୁ ଚାଳନା, ଖାଇବାରେ ମଧ୍ୟ କଷ୍ଟ ହେଉଥିଲା । କୌଣସି କାର୍ଯ୍ୟ କରିବାକୁ ଇଚ୍ଛା ହେଉନଥିଲା । ଦ୍ୱିତୀୟତଃ ସମ୍ବଲପୁର ଲେଖକ ସମ୍ମିଳନୀ ପାଇଁ ଟିକିଏ ଲାଗିବାକୁ ହେଲା । ତୃତୀୟତଃ ପାରିବାରିକ ଗୃହ ଚିନ୍ତା । ଏ ବାହାରେ ଚତୁର୍ଥ କାରଣ ହେଉଛି ବୟସ ଜନିତ ସ୍ମୃତି ଶକ୍ତିର ଅଳ୍ପତା । ବରଗଡ଼ 'କମଳା ଟକିଜ'ର ଉଦ୍‌ଘାଟନ ଉତ୍ସବ ଦିନ ବରଗଡ଼ କଲେଜ ଅଧ୍ୟକ୍ଷ ଯଜ୍ଞକୁମାର ବାବୁଙ୍କ ସଙ୍ଗେ ଆପଣଙ୍କ ଉଦ୍ୟମ ବିଷୟରେ କଥାବାର୍ତ୍ତା ହୋଇଥିଲୁଁ । ୯.୨.୬୮ର କଥା ଆଉ ଦୁଇ ତିନି ଜଣଙ୍କୁ ମଧ୍ୟ ଆପଣଙ୍କ ପତ୍ରର ଉତ୍ତର ଏଯାବତ୍ ଦେଇ ନ ପାରି ଲଜ୍ଜିତ ଅଛିଁ ବୋଲି କହିଥିଲି ମାତ୍ର ସେହି ବିବୃତି କମଗାଁ ହାଇସ୍କୁଲର ସହକାରୀ ଶିକ୍ଷକ ମୋର ପୁତ୍ର ଆୟୁଷ୍ମାନ୍ ଦୁର୍ଗା ପ୍ରସାଦ ଆପଣଙ୍କ ପତ୍ର ଦେଖି ମୋତେ କହିବାରୁ ପୁଣି ସ୍ମରଣ ହେଲା । ତେଣୁ ଉତ୍ତର ପତ୍ରର ଆବିର୍ଭାବ । ୫୦ବର୍ଷ ଅନବଚ୍ଛିନ୍ନ ଭାବେ ଚାକିରି କରି କେବଳ ଛାତ୍ର ଅଧ୍ୟାପନା, ଚରିତ୍ର ଗଠନ କଥା ଚିନ୍ତାକରି ସମୟ କଟିଲା । ଅବଶ୍ୟ ଶିକ୍ଷା ବିଭାଗରେ କାର୍ଯ୍ୟ ସମାଦୃତ ହୋଇଛି । ମାତ୍ର ସେଥିରେ ଜୀବନ ଧାରଣ ହୋଇପାରେ କି ? ଆମ୍ଭ ମାନଙ୍କର ତ ପେନ୍‌ସନ୍ ନାହିଁ । ପ୍ରଭିଡ଼େଣ୍ଟ୍ ଫଣ୍ଡରେ ସଞ୍ଚୟରେ ଖଣ୍ଡେ କୁଡ଼ିଆ ଠିଆ କରିବା କଷ୍ଟକର ହୋଇ ଉଠୁଛି । ପୁଣି ଜୀବନ ଧାରଣ ଏଣିକି ବିନା ବେତନରେ କିପରି ଚଳିବ ସେ ବିଶ୍ୱମ୍ଭର ଜାଣନ୍ତି । ଏପରି ଅବସ୍ଥାରେ ପଶ୍ଚିମ ଓଡ଼ିଶାର ଲୋକଗୀତ ସଂଗ୍ରହରେ ଅନନ୍ୟ ଚିତ୍ତ ହୋଇ ସାହାଯ୍ୟ କରିବାର ସମ୍ଭାବନା ଖୁବ୍ ଅଳ୍ପ । ନୋହିଲେ

ଆପଣଙ୍କ ପ୍ରସ୍ତାବରେ ମୋର ପୂର୍ଣ୍ଣ ସମର୍ଥନ ଜାଣିବେ । ଆପଣଙ୍କର ଉଦ୍ୟମ କୁସୁମିତ ହୋଇ ସଫଳ ହେଉ; ଏତିକି ମୋର ଐକାନ୍ତିକୀ କାମନା ।

ବିଶୁଦ୍ଧ ସମ୍ବଲପୁରୀ ପ୍ରବାଦ ୧୨୦୦ଟି ସଂଗ୍ରହ କରିଥିଲି । ୧୯୪୧. ମୋର ପରିବାରିକ ଅସ୍ଥିରତା ବେଳେ (ମୋର ଦୁଇଟି ପୁଅ ଝିଅ ଦୁଇ ଦିନ ଅନ୍ତରରେ ୧୯୪୦ ଭାଦ୍ରବରେ ନଷ୍ଟ ହେବାରୁ ସ୍ତ୍ରୀ ବାତୁଳୀ ହେବା) ତାହା ଉଇ ଖାଇଗଲେ । ପୁନଃ ସଂଗ୍ରହ କରିବା ଆଉ ସୁବିଧା ନାହିଁ । ଆର୍ଥିକ ସ୍ୱଚ୍ଛଳତା ଦ୍ୱାରା ଅନ୍ନବସ୍ତ୍ରର ଚିନ୍ତାରୁ ମୁକ୍ତ ରହିପାରିଲେ ଏବେ ସୁଦ୍ଧା ଅନେକ କାମ କରାଯାଇ ପାରନ୍ତା ଗୁରୁମାନଙ୍କ କୃପାରୁ । ଅନେକଙ୍କୁ ସରକାର ବୃଦ୍ଧ ବେଳେ ପେନ୍‌ସନ୍ ଦେଉଥିବାର ଶୁଣୁଛିଁ । କିନ୍ତୁ ଆମକଥା ସେ ଶୁଣିବେ କି, ମନେ ପକାଇବେ କି? ଯାହା ହେଉ ମୋର ସମ୍ବଲପୁରୀ ଭାଷାରେ ଲିଖିତ କେତେକ ଗୀତ ନମୁନା ସ୍ୱରୂପ ପଠାଇବାକୁ ଚେଷ୍ଟା କରିବି । ପସନ୍ଦ ହେଲେ ସେପରି ଆଉ କିଛି କରିବା । ବିଳମ୍ବ ପାଇଁ କ୍ଷମା ଦେବେ । ଆଜି ଏତିକି –

ଆପଣଙ୍କର
ଶଶିଭୂଷଣ ମିଶ୍ର
ଅ. ଶିକ୍ଷକ
ଜର୍ଜହାଇସ୍କୁଲ,
ବରଗଡ଼ ।

## ଗ୍ରନ୍ଥ ଅଧ୍ୟୟନ ଓ ପ୍ରତିଭାର ବିକାଶ

ଶଶିଭୂଷଣ ଜଣେ ସତ୍ୟସନ୍ଧ ଗବେଷକ ଓ ସାହିତ୍ୟିକ ହେବାପାଇଁ ବ୍ୟାପକ ଭାବେ ଓଡ଼ିଆ, ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଇଂରାଜୀ ତଥା ସମକାଳୀନ ଅନ୍ୟାନ୍ୟ ଭାରତୀୟ ସାହିତ୍ୟ– ଏପରିକି ବିଶ୍ୱସାହିତ୍ୟ ମଧ୍ୟ ଅଧ୍ୟୟନ କରିଛନ୍ତି । ଓଡ଼ିଶା ସାହିତ୍ୟରେ ଭଂଜ, ଅଭିମନ୍ୟୁ, ଦୀନକୃଷ୍ଣ, ଗୋପାଳକୃଷ୍ଣ, କବିସୂର୍ଯ୍ୟ, ସାରଳାଦାସ, ଜଗନ୍ନାଥ ଦାଶ, ଭୀମଭୋଇ, ରାଧାନାଥ, ଫକୀର ମୋହନ, ଗଙ୍ଗାଧର, ମଧୁସୂଦନ, ନନ୍ଦକିଶୋର, ଗୋପବନ୍ଧୁ, ନୀଳକଣ୍ଠ, ମାନସିଂହ, ଗଡ଼ନାୟକ ପ୍ରଭୃତିଙ୍କ ସୃଷ୍ଟି ପ୍ରତ୍ୟକ୍ଷରେ ନିଜକୁ ହଜାଇ ଦେଇଛନ୍ତି । ତାଙ୍କର ରଚନାବଳୀ ପାଠକରି ମୁଗ୍ଧ-ବିଭୋର ହୋଇଛନ୍ତି । ସଂସ୍କୃତ ସାହିତ୍ୟରେ କାଳିଦାସ, ରାଜଶେଖର, ମାଘ, ଭାରବୀ, ବାଣ ଭଟ୍ଟ, ଜୟଦେବ, ଶ୍ରୀହର୍ଷ, ଭର୍ତ୍ତୃହରି, ବିହ୍ଲଣ, ବିଶ୍ୱନାଥ କବିରାଜ, ଭାମହ, ଆଚାର୍ଯ୍ୟ ଦଣ୍ଡୀ, ଭୋଜରାଜ, କ୍ଷେମେନ୍ଦ୍ର, ହେମେନ୍ଦ୍ର, ବିଦ୍ୟାପତି, ଚଣ୍ଡୀଦାସ, ମୈଥିଳୀ ପ୍ରଭୃତି ବିଶିଷ୍ଟ ସଂସ୍କୃତ କବି, ମହାକବି ଓ ଆଳଂକାରିକ ମାନଙ୍କୁ ଗଭୀର ଭାବେ ଅଧ୍ୟୟନ, ଚିନ୍ତନ ଓ ମନନ କରିଛନ୍ତି । ବଙ୍ଗଳା ସାହିତ୍ୟରେ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର, ବଙ୍କିମଚନ୍ଦ୍ର, ନବୀନଚନ୍ଦ୍ର ପ୍ରଭୃତିଙ୍କୁ ମଧ୍ୟ ପାଠ କରିଛନ୍ତି ।

ପୃଥିବୀର ବିଶିଷ୍ଟ ଚିନ୍ତାନାୟକ ରସ୍କିନ୍, ଥୋରିଓ, ଲେନିନ୍, କାର୍ଲମାକ୍ସ, ଟଲଷ୍ଟୟ ପ୍ରଭୃତିଙ୍କ ରଚନାବଳୀ, ମହାତ୍ମାଗାନ୍ଧି, ଅରବିନ୍ଦ, ରାଧାକ୍ରିଷ୍ଣନ୍, ଆଚାର୍ଯ୍ୟ ବିନୋବା, ସ୍ୱାମୀ ବିବେକାନନ୍ଦ, ରବୀନ୍ଦ୍ରନାଥ ପ୍ରଭୃତିଙ୍କ ଫିଲୋସଫି, ଇଂରାଜୀ ସାହିତ୍ୟର ଉଇଲିୟମ ସେକ୍‌ସପିଅର, ଜନ୍ ମିଲ୍‌ଟନ୍, ଜର୍ଜ ବର୍ଣ୍ଣାଡ଼ଶ, ପି.ବି ଶେଲୀ (Pery Bysshe Shelley), କୀଟ୍‌ସ, ବାଇରନ୍, ବିଶିଷ୍ଟ ଜର୍ମାନ୍ ଦାର୍ଶନିକ ଓ ସାହିତ୍ୟକାର ଗୋଏଟେ GOETHE (Johann wolfgang Von Goethe) ପ୍ରଭୃତି ସାହିତ୍ୟିକ ବୃନ୍ଦଙ୍କୁ ତନ୍ନ ତନ୍ନ କରି ଅଧ୍ୟୟନ କରିଛନ୍ତି । କ୍ରମାଗତ ଭାବେ ଅଧ୍ୟବସାୟ ଚଳାଇ ଆସିଛନ୍ତି ।

ଶଶିଭୂଷଣ ଏକାଧାରାରେ ଜଣେ ସ୍ପଷ୍ଟବକ୍ତା, ଅକୁତୋଭୟ, ସତ୍ୟସନ୍ଧ ସାରସ୍ୱତ ଗବେଷକ, ଭାଷା ଓ ସାହିତ୍ୟର ମୁଗ୍‌ଧ ଆଲୋଚକ। କବି ମାନସିଂହଙ୍କ ଭାଷାରେ କହିବାକୁ ଗଲେ– "ବିଦ୍ୟାଧର ହେବା ଯେତିକି ସହଜ, ବିଦ୍ୟାନୁରକ୍ତ ହେବା ସେତିକି ନୁହେଁ ।" ସାହିତ୍ୟ ସାଧନାରେ ତାଙ୍କର ସମଗ୍ର ଶିକ୍ଷକ ଜୀବନ ଉତ୍ସର୍ଗ କରିଦେଇଛନ୍ତି। ଏଠାରେ ସାହିତ୍ୟପ୍ରାଣ କବି ଖଗେଶ୍ୱର ଶେଠଙ୍କ "ଚଇତ-ଅମାସ୍ୟା" କାବ୍ୟର ପଦଟିଏ ମନେପଡ଼େ : "ସାହିତ୍ୟ ସାଧନା ନୁହେଁ ବିକା କିଣା ପଦାର୍ଥ ବା' ବ୍ୟବସାୟ,

ଲୋଡ଼ା ତହିଁ ତ୍ୟାଗ ଶ୍ରଦ୍ଧା ଅନୁରାଗ ସୁଚିନ୍ତା ଅଧ୍ୟବସାୟ ।"

(ଖଗେଶ୍ୱର ଗ୍ରନ୍ଥାବଳୀ– ୧୯୭୩, ପୃ.୬୨୮)

## ଶଶିଭୂଷଣଙ୍କ କବି ଜୀବନ

କବିତା ରଚନାରୁ ହିଁ ତ ତାଙ୍କ କବି ଜୀବନର ଆରମ୍ଭ ହୋଇଥିଲା। ଶଶିଭୂଷଣଙ୍କ ପ୍ରଥମ କବିତା ପ୍ରକାଶିତ ହୋଇଛି କବି ଦୟାନିଧି ମିଶ୍ରଙ୍କ ସମ୍ପାଦନାରେ କଟକରୁ ପ୍ରକାଶିତ ହେଉଥିବା "ନବଯୁଗ" ମାସିକ ସାହିତ୍ୟ ପତ୍ରିକାରେ । "ନବଯୁଗ"ରେ ପ୍ରକାଶିତ ସଂପୂର୍ଣ୍ଣ କବିତାଟି ଏଠାରେ ଉଦ୍ଧାର କରାଗଲା :

ବାଣୀ ଆବାହନ।

"ଶରଧା ବଳିଛି ମୋର ପୂଜିବାକୁ କଞ୍ଜପୟର,
ଅର୍ଚ୍ଚନା ସମ୍ଭାର କିଛି ନାହିଁ ଜନନୀ ମାତର ।

ଉପଇନ୍ଦ୍ର, ଅଭିମନ୍ୟୁ, ଦୀନକୃଷ୍ଣ, ଗଙ୍ଗାଧର
ଶାରଳାଦି ମହାଜନ ଭାଗ୍ୟବାନ ଯା କୋୟର
ତୁଳନାରେ ମୁଁ କି ଛାର, ଅଜଣା ମୂଲ୍ୟ "ସି" ଗାର
ଅନ୍ତରେ ପୋଷିଛି ଆଶା ମୁଁ ରଖ ଯେଣୁ କୃପା ଭଣ୍ଡାର
ତହିଁରୁ ଦେଲେକ ଲେଶ, ଅଜ୍ଞାନ କ୍ଲେଶ, ତୁଟିଯିବ ମୋହ ଅନ୍ଧାର ॥୧॥

"ଚିନ୍ତାମଣି" "କଉତୁକ" "କଲ୍ଲୋଳ" ସମ କୁସୁମ
କାହୁଁ ପାଇବି ଆଣିଛିଁ ନିର୍ଗନ୍ଧ ଭକତି ସୁମ,
ବିନୟ ଜଳେ ସ୍ନାହାନ ଭାବ ଚନ୍ଦନ ଲେପନ
କରି ପୂଜେଁ ଯତନେ ଶେଷେ ଅହଂ ନଇବେଦ୍ୟ ପ୍ରଦାନ
ଏତିକି ତବ ମରଜି, କଲି ଅରଜି, କର ବା ନକର ଉଦ୍ଧାର ।। ୨ ।।

(ନବଯୁଗ – ୧ମ ଭାଗ, ୨ୟ ସଂଖ୍ୟା, ଜ୍ୟେଷ୍ଠ ୧୩୩୫; ମଇ ୧୯୨୮) ।

ତାଙ୍କର କବିତାରେ ଆମେ ଜାଣିବାକୁ ପାଉଁ ଗଭୀର ଅନୁଭୂତିର ସଫଳ ରୂପାୟନ, ରସାଳ କାବ୍ୟଚିତ୍ର । ଶଶିଭୂଷଣ ନିଜ କବିତାରେ କେବଳ କଳ୍ପନା ଓ ସ୍ୱପ୍ନ ରାଜ୍ୟର ଚିତ୍ର ଦେଇ ନାହାନ୍ତି, ଅଧିକନ୍ତୁ ବାସ୍ତବ ଜୀବନର ସୂକ୍ଷ୍ମ ରୂପାଙ୍କନ ଦେଖିବାକୁ ମିଳେ । "ବାଣୀ ଆବାହନ" କବିତାର ପ୍ରଥମ ପଦରେ ଚାରିଜଣ ପ୍ରତିଷ୍ଠିତ ଓଡ଼ିଆ କବିଙ୍କର ନାମୋଲ୍ଲେଖ ରହିଥିବା ବେଳେ ଦ୍ୱିତୀୟ ପଦରେ ତିନୋଟି ପ୍ରସିଦ୍ଧ କାବ୍ୟର ନାମ ରହିଛି । କିନ୍ତୁ ଚାରିଗୋଟି କାବ୍ୟର ଅର୍ଥ ପ୍ରତିପାଦନ କରୁଛି । ଯେପରି ଏଠାରେ "କଲ୍ଲୋଳ" କହିଲେ ଦୁଇଟି ଚମତ୍କାର ଅର୍ଥ ଧ୍ୱନିତ ହେଉଛି । ଗୋଟିଏ "କଲ୍ଲୋଳ"ର ଅର୍ଥ ଦୀନକୃଷ୍ଣ ଦାସଙ୍କ ପ୍ରସିଦ୍ଧ କାବ୍ୟ "ରସ କଲ୍ଲୋଳ" ଓ ଅପର "କଲ୍ଲୋଳ" ମାନେ ଗଙ୍ଗାଧରଙ୍କ "କବିତା-କଲ୍ଲୋଳ" । ତେଣୁ ତାଙ୍କ କବିତା ମାନଙ୍କରେ ଏଭଳି ଉପଯୁକ୍ତ ଶବ୍ଦ ବିନ୍ୟାସ ରହିଛି ।

୧୯୫୪ ମସିହାରେ "ଓଡ଼ିଶାର ମୌଳିକ ଶିକ୍ଷା ସଂଗଠକ'' (Organiser of Basic Education, Orissa) ମହୋଦୟଙ୍କ ନିର୍ଦ୍ଦେଶକ୍ରମେ ସାହିତ୍ୟିକ ଶ୍ରୀ କେଶବ ଚନ୍ଦ୍ର ମେହେରଙ୍କ ସଂପାଦନାରେ "ଶିକ୍ଷା-ସଙ୍ଗୀତ" ନାମରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ପ୍ରକାଶିତ ହୋଇଥିଲା । ଏଭଳି ଖଣ୍ଡେ ଉପାଦେୟ ପୁସ୍ତକ ସଂକଳନ କରିବାର ପ୍ରସ୍ତାବ ଓ ଶୁଭ ଚିନ୍ତା ପ୍ରକୃତରେ ଶଶିଭୂଷଣ ମିଶ୍ର ହିଁ କରିଥିଲେ । ଏହାର ପ୍ରକାଶକ ଥିଲେ ସ୍ୱୟଂ ଶ୍ରୀ କେଶବ ଚନ୍ଦ୍ର ମେହେର । ଏଥିରେ ଯେଉଁମାନଙ୍କ ଲେଖା ସଂକଳିତ ହୋଇଥିଲା ସେମାନେ ହେଲେ : (୧) ଶ୍ରୀ ଶଶିଭୂଷଣ ମିଶ୍ର, (୨) କବି ଶ୍ରୀ ଖଗେଶ୍ୱର ଶେଠ, (୩) ଶ୍ରୀ ସାଧୁଚରଣ ପଟ୍ଟନାୟକ, (୪) ଶ୍ରୀ କେଶବଚନ୍ଦ୍ର ମେହେର, (୫) ଶ୍ରୀ ଅଭିମନ୍ୟୁ ପ୍ରଧାନ ।

ଶଶିଭୂଷଣ ମିଶ୍ରଙ୍କ ଯେଉଁ କବିତାଟି ଏଥିରେ ସଂକଳିତ ହୋଇଥିଲା, ତାହାର ଶୀର୍ଷକ ହେଉଛି "ଚାଷର ବଡ଼ାଇ" । ଏହି କବିତାରେ ସେ ଚାଷୀକୁଳକୁ କର୍ମ ପ୍ରେରଣାର ଶିକ୍ଷା ପ୍ରଦାନ କରିଛନ୍ତି । ସମ୍ବଲପୁରର ଅତୀତ ଗୌରବ ସଂପର୍କରେ ଅବଗତ କରାଇଛନ୍ତି । କବି ଶଶିଭୂଷଣ ଲେଖିଛନ୍ତି :

"ଚଷା, ଚାଷକର ମନ ଦେଇ
ଚାଷ ରଖିଛି ଆମ୍ଭର ପ୍ରାଣ । ୦ ।"
ଚାଷ ହୁଡ଼ିଲେ ଏକା ବରଷେ

ହାହାକାର ପଡ଼ିଯିବ ଦେଶେ
ଧାନ ଚାଉଳ ନମିଳେ ଯଦି
କହ ରହିବ କାହାର ଟାଣ ? । ୧ ।
ନିଜ ଜମି ରଖିଣ ପଡ଼ିଆ
ପର ଘରେ ମାଗିଲେ ଅଡ଼ିଆ
ନିଜେ ମରି ମାରିବୁ କୁଟୁମ୍ବ
ଏହା ତିନିବାର ସତ ଜାଣ । ୨ ।
ଖେତ ହସିଲେ ତୁହି ହସିବୁ
ଖାଇ ପିଇ ପରେ ପରଷିବୁ
ତୋତେ ସାନ ବୋଲି ଯେହୁ ହସେ
ଆଖି ଥାଉଁ ଥାଉଁ ସେହୁ କାଣ । ୩ ।"
(ଶିକ୍ଷା ସଙ୍ଗୀତ– ୧୯୫୪, ପୃ. ୧୬)

ସମ୍ବଲପୁର ହେଉଛି ଗୋଟିଏ ଭାଗ୍ୟବାନ୍ ଦେଶ । ଏପରି ଭାଗ୍ୟବାନ୍ ଦେଶ ସମଗ୍ର ପୃଥିବୀରେ ବିରଳ କହିଲେ ଚଳେ । ଅନ୍ୟ ଅର୍ଥରେ ସମ୍ବଲପୁର ହେଉଛି ଓଡ଼ିଶାର ଭାତହାଣ୍ଡି । ଏହି ଜିଲ୍ଲାର କୃଷି ଓ କୃଷକ ଉନ୍ନତ ମାନର । ଏଠାରେ କୃଷକ ଏକାଧାରରେ ପରିଶ୍ରମୀ ଓ ବଳଶାଳୀ । ସମ୍ବଲପୁରର ଚାଉଳ ଓ ଡାଲି ବହୁ କାଳରୁ ଭାରତରେ ପ୍ରସିଦ୍ଧି ଲାଭ କରିଛି । ଏଠାରେ ଚାଉଳର ଅଭାବ କେବେ ପଡ଼େ ନାହିଁ । ଆମେ ଦେଖିବାକୁ ପାଇବା ଯେ ପର୍ବପର୍ବାଣିରେ ସମ୍ବଲପୁରର ପଲ୍ଲୀ ଅଞ୍ଚଳରେ ଯେଉଁ ଘରେ ଲକ୍ଷ୍ମୀ-ଠାକୁରାଣୀଙ୍କର ଭୋଗ ଅଥବା ଅନ୍ୟ ଦେବ-ଦେବୀଙ୍କ ପାଇଁ ଭୋଗ ରନ୍ଧା ଯାଉଥିବ ସେହି ପଡ଼ାଟା ଯାକ ସେହି ଚାଉଳର ସୁବାସରେ ସୁଗନ୍ଧିତ ହେଉଥିବ, ମହକି ଉଠୁଥିବ । ଯେତେବେଳେ ସମଗ୍ର ଭାରତବର୍ଷରେ ଚାଉଳର ଅଭାବରେ ହାହାକାର କରୁଥିଲା, ସେହି ସମୟରେ ସମ୍ବଲପୁରର ଚାଉଳ ଓଡ଼ିଶା ସମେତ ଭାରତର ଅନ୍ୟାନ୍ୟ ଅଞ୍ଚଳକୁ ମଧ୍ୟ ପଠାଯାଉଥିଲା । ଉନବିଂଶ ଶତାବ୍ଦୀର ଶେଷ ଆଡ଼କୁ (ନ'ଅଙ୍କ ଦୁର୍ଭିକ୍ଷ ପରେ ପରେ) ସମ୍ବଲପୁର, ବିଶେଷକରି କଟକ ଜିଲାକୁ ଚାଉଳ ଯୋଗାଇଛି । ଅସୁବିଧା ବଶତଃ ମଝିରେ ମଝିରେ ଚାଉଳ ପହଞ୍ଚି ପାରୁ ନଥିବାରୁ କଟକ କମିଶନର ସାହେବ ଦୁଃଖ ପ୍ରକାଶ ପୂର୍ବକ ସମ୍ବଲପୁରକୁ ବ୍ୟକ୍ତିଗତ୍ ଭାବେ ପତ୍ର ଲେଖିଛନ୍ତି । ଏ ସଂପର୍କରେ ସାପ୍ତାହିକ ସମ୍ବାଦପତ୍ର "ସମ୍ବଲପୁର ହିତୈଷିଣୀ" ଘୋଷଣା କରି କହିଛି :

"ଓଡ଼ିଶ୍ୟାରେ ଉତ୍ତମ ଶସ୍ୟ ହୋଇ ନଥିବାରୁ ସମ୍ବଲପୁର ଅଞ୍ଚଳର ମହାଜନମାନେ କଟକକୁ ଶସ୍ୟ ଘେନିଗଲେ ଲାଭବାନ ହୋଇ ପାରିବା ସକାଶେ କଟକ କମିଶ୍ନର ସମ୍ବଲପୁରକୁ ପତ୍ର ପଠାଇଥିଲେ । ବର୍ତ୍ତମାନ ମହାଜନମାନେ

ଲାଗିପଡ଼ି ଚାଉଳ କିଣୁ ଥିବାରୁ କିଣିଖିଆ ଲୋକମାନେ ଆଉ ଚାଉଳ ପାଇବାକୁ ନାହିଁ, ବର୍ତ୍ତମାନ ଏହି ଦୁଃଖ କାହାଣୀ ସ୍ଥାନୀୟ କର୍ତ୍ତାଙ୍କୁ ଜଣାଇବା ଉଦ୍ୟୋଗରେ ଅଛନ୍ତି । ଆଶା କରୁଁ, ଡେପୁଟୀ କମିଶ୍ନର ମହୋଦୟ କିଣିଖିଆ କୁଳର ରକ୍ଷା ଆଶୁ ବିହିତ ବନ୍ଦୋବସ୍ତ କରିବେ ।"

(ସମ୍ବଲପୁର ହିତୈଷିଣୀ – ୩/୨୬ : ତା ୯-୧୨-୧୮୯୧, ବୁଧବାର)

ସମ୍ବଲପୁରରେ 'ହୀରାକୁଦ ବନ୍ଧ' ବିରୋଧ ଆନ୍ଦୋଳନ ସମୟରେ ଶଶିଭୂଷଣ ତାଙ୍କର "କାଁ କର୍‌ମା" ସମ୍ବଲପୁରୀ କବିତାଟି ସମ୍ଭବତଃ ଲେଖିଥିବେ ବୋଲି ଅନୁମାନ ହୁଏ । "କାଁ କର୍‌ମା" କବିତାରେ କବି ଶଶିଭୂଷଣ ଲେଖିଥିଲେ :

**କାଁ କର୍‌ମା !**

"ଚାଲ୍‌ରେ ଯୁଆନ୍ ଚାଲ୍
ଚାଲ୍‌ରେ ଯୁଆନ୍ ଚାଲ୍
ଗୋଡ଼୍ ମିଶେଇ ମିଶେଇ ଚାଲ୍
ରାଗ୍ ବସେଇ ବସେଇ ଚାଲ୍
        ଚାଲ୍‌ରେ ଯୁଆନ୍ ଚାଲ୍ । ୦ ।
ବାପ୍ ଅଜାର୍ ନାମେରେ
        ବାପ୍ ଅଜାର୍ ନାମେ ଚାଲ୍
ତୋର୍ ଦାୟତ୍ ଧଜା ସଁଭାଲ୍
ଡର୍‌ହା ମର୍‌ହା ଛେର୍‌ହା ଛନ୍‌କା
        ତୋର୍ ଭିଲୁ ନିକାଲ୍ । ୧ ।
କେନ୍ତା ଲୋକର୍ ପୋ ତୁଇରେ
        କେନ୍ତା ଲୁକର୍ ନାତି
ବଖ୍ଲା ବଖ୍ଲା ହାତ୍ ବାହା ତୋର୍
        କୁଲେ ଭସାର୍ ଛାତି–
ତୋର୍ ତୀର୍ ଛାଟ୍ କପାଲ୍‌ରେ
        ତୀର୍ ଛାଟ୍ କପାଲ୍
ଦେଶର୍ ଦଶର୍ ଜାତିର୍ ଲାଗି ସଁଭ୍ରି ସଁଭ୍ରି ଚାଲ୍
        ଦିହର୍ ରକତ୍ ଢାଲ୍‌ରେ
        ମାଖିବୁ ଫୁଲ୍‌ର ମାଲ୍ । ୨ ।

(ହୀରାଖଣ୍ଡ ସମାଚାର–୧/୨୦: ତା ୨୪/୧୨/୧୯୪୬ : ମଙ୍ଗଳବାର, ପୃ. ୪)

ଶଶିଭୂଷଣଙ୍କ ଉପରୋକ୍ତ କବିତାରୁ ଓଡ଼ିଆ ଭାଷାପ୍ରତି, ପୂର୍ବପୁରୁଷଙ୍କ ଗୌରବ ପ୍ରତି, ସାହିତ୍ୟ ପ୍ରତି, କିଭଳି ଗଭୀର ସମ୍ମାନ ଥିଲା ତାହା ସହଜରେ ଏକାନ୍ତ ଭାବରେ ଅନୁମେୟ କରିହୁଏ । ଠିକ୍ ସେହିପରି ଶଶିଭୂଷଣଙ୍କ "ସ୍ୱଦେଶ ବନ୍ଦନା" କବିତାରେ ମଧ୍ୟ ଉପରୋକ୍ତ ଭାବ ଓ ଚିନ୍ତାର ପରିପ୍ରକାଶ ଫୁଟିଉଠେ । "ସ୍ୱଦେଶ ବନ୍ଦନା"ରେ ଲେଖିଛନ୍ତି :

(୧)

ହିମାଦ୍ରି ଯାହାର ପ୍ରହରୀ<br>
ସାଗର ବନ୍ଦେ ପଦ ଧରି,<br>
କରଇ ପକ୍ଷୀ ସମ ଗାନ,<br>
ମୁହିଁ ସେ ଭାରତ ସନ୍ତାନ ॥

(୨)

ଅମୃତ ଯାର ନଦୀ ଜଳ,<br>
ଯେ ଦେଶେ ଫୁଟେ ଶତଦଳ,<br>
ଯା ସୁତ ବାନ୍ଧେ ପବମାନ,<br>
ମୁହିଁ ସେ ଭାରତ ସନ୍ତାନ ॥

(୩)

ଯା'ସୁତ ଡେଇଁପାରେ ସିନ୍ଧୁ,<br>
ଗୀତା ଯା ସୁତ ରକ୍ତ ବିନ୍ଦୁ,<br>
ଯା' ସୁତ କରେ ରାଜ୍ୟଦାନ,<br>
ମୁହିଁ ସେ ଭାରତ ସନ୍ତାନ ॥

(୪)

ପରଜା ହିତ ଚିନ୍ତି ମନେ,<br>
ଯା' ରାଜା ପତ୍ନୀ ତେଜେ ବନେ,<br>
ଯା' ସୁତ କରେ ସିନ୍ଧୁପାନ,<br>
ମୁହିଁ ସେ ଭାରତ ସନ୍ତାନ ॥

(୫)

ଧରମ ପାଇଁ ଯାର କନ୍ୟା<br>
ଅନଳେ ପଶି ହୁଏ ଧନ୍ୟା,<br>
ଯା'ସୁତା ଭାଙ୍ଗେ ଯମଟାଣ,<br>
ମୁହିଁ ସେ ଭାରତ ସନ୍ତାନ ॥

(୬)

ଯା' ସୁତ ସୃଜିପାରେ ବିଶ୍ୱ,
ଯା' ସୁତ ଦାନେ ହୁଏ ନିଃସ୍ୱ,
ଯା' ସୁତ ସଖା ଭଗବାନ,
ମୁହିଁ ସେ ଭାରତ ସନ୍ତାନ ॥

ଶଶିଭୂଷଣଙ୍କ ଏହି କବିତାରେ ଆମେ ଦେଖିବାକୁ ପାଉଁ ଭାରତ ଜନନୀଙ୍କର ଗୌରବ, ରାମାୟଣ, ମହାଭାରତ ଏବଂ ଗୀତା ଭଳି ପବିତ୍ର ଗ୍ରନ୍ଥର ମହାନ୍ ବାଣୀ ଓ ପରାମର୍ଶ ତଥା ବହୁ ଚର୍ଚ୍ଚିତ କାହାଣୀ, ଭାରତର ଗିରି-ନଦୀ, ପାହାଡ଼-ପର୍ବତ, ରାଜ୍ୟ ଶାସନ ତଥା ଜାତୀୟ ସଂହତି ଓ ସାହିତ୍ୟ । ତେବେ 'ଜାତୀୟ ସଂହତି' କ'ଣ ? ବା 'ଜାତୀୟ ସଂହତି' କହିଲେ ଆମେ କ'ଣ ବୁଝୁ ? କୌଣସି ଦେଶର ଅଧିବାସୀ ମାନଙ୍କ ଭିତରେ ଥିବା ଏକତା ଓ ସଦ୍‌ଭାବକୁ ଜାତୀୟ ସଂହତି କୁହାଯାଇଥାଏ । ଦେଶର ସ୍ୱାଧୀନତା ରକ୍ଷା ସାମୂହିକ ବିକାଶ ନିମନ୍ତେ ଜାତୀୟ ଐକ୍ୟ ଓ ସଂହତି ଆବଶ୍ୟକ । ଦେଶର ସମସ୍ତ ଅଧିକାରୀ ନିଜର ସ୍ୱାର୍ଥପ୍ରତି ସଚେତନ ରହିବା ସଙ୍ଗେ ସଙ୍ଗେ ଦେଶର ସାମୂହିକ ସ୍ୱାର୍ଥ ଓ କଲ୍ୟାଣ ନିମନ୍ତେ ଯତ୍ନବାନ୍ ହେଲେ ଏବଂ ଦେଶ ଓ ଜାତିର, ଭାଷା ଓ ସାହିତ୍ୟର ବୃହତ୍ତର ଉଦ୍ଦେଶ୍ୟ ପ୍ରତି ଅନୁରକ୍ତ ରହିଲେ, ପୂର୍ଣ୍ଣ ସମର୍ପିତ ହୋଇ ପାରିଲେ ଜାତୀୟ ଐକ୍ୟ, ସଂହତି ପ୍ରତିଷ୍ଠିତ ହେଲା ବୋଲି ବୁଝିବାକୁ ହେବ । ଆମଦେଶ ଏକ ବିଶାଳ ଦେଶ–ଆଞ୍ଚଳିକ ବୈଭବ୍ୟ, ଜାତି, ବର୍ଣ୍ଣ, ଧର୍ମ, ଭାଷା ଓ ବୃତ୍ତିଗତ ପାର୍ଥକ୍ୟ– ଯଦି ଦେଶର ସମସ୍ତ ଅଧିବାସୀ ସ୍ନେହ, ସୌହାର୍ଦ୍ଦ୍ୟ, ସହନଶୀଳତା ତଥା ମାନସିକ ଏକତାର ଆବେଗରେ ପରସ୍ପର ଆବଦ୍ଧ ହେବେ ଏବଂ ଆପଣାର ସ୍ୱାର୍ଥଠାରୁ ଜାତୀୟ ସ୍ୱାର୍ଥକୁ ଉଚ୍ଚତର ସ୍ଥାନ ଦେବେ, ତେବେ ଦେଶର ପ୍ରକୃତ ସଂହତି ପ୍ରତିଷ୍ଠା ହୋଇପାରିବ ।

ମଣିଷକୁ ଆଜୀବନ ନିରନ୍ତର ସତ୍ୟ ଓ ଧର୍ମ ପଥରେ ରହି ପରିଶ୍ରମୀ, କର୍ମୀ ହେବାକୁ କବି ତାଙ୍କର "ଉଠ ଉଠ ହେ ଭାଇ" ଶୀର୍ଷକ ତାଙ୍କର ଅନ୍ୟଏକ କବିତାରେ କହିଛନ୍ତି । କବିଙ୍କ ଭାଷାରେ :

"ଉଠ ଉଠ ହେ ଭାଇ !
ଶୋଇଲା ପୁଅ ଭାଗ ପାଏ କି କାହିଁ ହେ ! ॥ ଘୋଷା ॥
ଯତନ କଲେ ସିନା ମିଳେ ରତନ
ପାଇଛି କିଏ କେବେ ଦେଖି ସପନ ହେ
ଏହା ଶୁଣି ତ ନାହିଁ
ଶୋଇଲା ପୁଅ ଭାଗ ପାଏ କି କାହିଁକେ
ଉଠ ଉଠ ହେ ଭାଇ । ୧ ।

ଏକା ପେଟରୁ ହେଲେ ହେଲେ ଜନମ
ଯେ କାଳେ ମାଆ ଧରି ଦିଏ ଚୁମ୍ବନ ହେ
ଏହା ଜାଣକି ନାହିଁ । ୨ ।
ସିଂହ ମୁହଁ ମେଲାଇ ଶୋଇଲେ ବନେ
ମୃଗ କି ପଶିଯିବ ଆପଣା ମନେ ହେ
କହ ବୁଦ୍ଧି ଲଗାଇ । ୩ ।
ଦେବା, ମରିବା ପାଇଁ ନୁହେ କେ ରାଜି
ଯୁଗୁଁ ଯୁଗ ଚାଲିଛି, ନୁହଇ ଆଜି ହେ
ଦେବି କେତେ ବୁଝାଇ । ୪ ।
କିଏ କାହିଁ ବା ଦିଏ ନଭ ଓଳାଇ ?
ଆଉ ତୁମେ ବସିଛ ଗୋଡ଼ ଲମ୍ବାଇ ! ହେ
ଦେଖ ଆଖି ଫିଟାଇ । ୫ ।
ଘିଅ ଖାଇ ଗୋରସେ ଆଞ୍ଚେ କା ପୁଅ
ଭୁଜା ପାଇଁ କା ପୁଅ ଗଡ଼ାଏ ଲୁହ ହେ
ନ୍ୟାୟ ବିଚାର ଚାହି । ୬ ।

(ଅପ୍ରକାଶିତ ପାଣ୍ଡୁଲିପି)

ତାଙ୍କର ଉନ୍ନତ ଓ ମୌଳିକ କଳ୍ପନା ତାଙ୍କର ପ୍ରତ୍ୟେକ ସାର୍ଥକ କବିତାରେ ପାଠକ ଲକ୍ଷ୍ୟ କରିଥାଏ । ତାଙ୍କର ଏହି କବିତାର ଭାବ ଅଧିକତର ଚିତ୍ତାକର୍ଷକ ହୋଇଛି, ଅଧିକତର ଋଦ୍ଧିମନ୍ତ ହୋଇଛି । ସାଧାରଣ ଭାବେ କ-ଖ-ଗ ଲେଖି ପଦବସାଣ କରୁଥିବା, ପଦ ତିଆରି କରୁଥିବା ବ୍ୟକ୍ତିଙ୍କୁ 'କବି' କୁହାଯାଇ ପାରିବ ନାହିଁ । ଅଥଚ ଅକ୍ଷର ଗଣି, ଅକ୍ଷର ମିଳାଇ କବିତା ଲେଖୁଥିବା ବା ମୁଖରୁ ଯାହା କିଛି ଉଦ୍‌ଗାରି ପକାଇଲେ କେହି, କେବେ କେଉଁଠାରେ କବିଟିଏ, ଭକ୍ତଟିଏ ହୋଇ ଯାଏନାହିଁ ।

## ବରଗଡ଼ର ସାହିତ୍ୟିକ ପରିବେଶ :

ସେ ବରଗଡ଼ରେ ଥିବାବେଳେ ସେଠାକାର ଲେଖକ– କବିଭୂଷଣ ସ୍ୱପ୍ନେଶ୍ୱର ଦାଁଶ, କବି ଦୟାନିଧି ମିଶ୍ର, ଐତିହାସିକ ଘନଶ୍ୟାମ ଦାଶ, କବି ଖଗେଶ୍ୱର ଶେଠ, କବି ଖଗେଶ୍ୱର ସାହୁ, ସାହିତ୍ୟିକ ସାଧୁଚରଣ ପଟ୍ଟନାୟକ, ଔପନ୍ୟାସିକ ଗୋପୀନାଥ ମହାନ୍ତି, ବରପାଲିର କବିପୁତ୍ର ଭଗବାନ ମେହେର, ପଣ୍ଡିତ ରାଘବ ମିଶ୍ର, କଥାକାର ରାମପ୍ରସାଦ ସିଂହ ପ୍ରଭୃତି ଲେଖକମାନଙ୍କ ସହିତ ମିଶି ଗୋଟିଏ ସାହିତ୍ୟିକ ପରିବେଶ ସୃଷ୍ଟି କରି ପାରିଥିଲେ । ସାହିତ୍ୟିକ ମାନଙ୍କ ଭିତରେ ଏପରି ଏକ ଉତ୍ତମ ସାହିତ୍ୟିକ ବାତାବରଣ ସୃଷ୍ଟି କରିବାରେ ତାଙ୍କର ଭୂମିକା ଥିଲା ପ୍ରକୃତରେ ଅଭିନନ୍ଦନୀୟ ଓ ପ୍ରଶଂସନୀୟ ।

## ଶିଶୁପ୍ରାଣ-ଶଶିଭୂଷଣ

ଜୀବନର ପ୍ରଥମ ସୋପାନ ହେଉଛି– 'ଶିଶୁ' ବା 'ଶୈଶବ ଅବସ୍ଥା'। ଶିଶୁର ଜୀବନକୁ ଗଢ଼ିବାକୁ ହେଲେ ତା'ପାଇଁ ଉନ୍ନତ, ମାର୍ଜିତ ଓ ସଂସ୍କୃତି ସଂପନ୍ନ ପରିବେଶର ଆବଶ୍ୟକତା ରହିଛି। ଶିଶୁଟିଏ ଯେତେବେଳେ ଦୁନିଆ-ସମାଜ-ପିତାମାତାଙ୍କୁ ଚିହ୍ନିବା ପାଇଁ ତାର ଯେଉଁ ଜିଜ୍ଞାସୁ ମନୋବୃତ୍ତି ସୃଷ୍ଟି ହୋଇଥାଏ, ସେଥିପାଇଁ ଆବଶ୍ୟକ ହୁଏ ଉତ୍ତମ ଶିକ୍ଷା, ସ୍ୱାସ୍ଥ୍ୟ ଓ ଉନ୍ନତ ସାହିତ୍ୟ। ଶଶିଭୂଷଣ ତାଙ୍କ ଶିକ୍ଷକ ଜୀବନର ମଧ୍ୟ ଭାଗରେ ଶିଶୁ ସାହିତ୍ୟ ରଚନା କରିବା ପାଇଁ ମନୋନିବେଶ କରିଥିଲେ। ମାତ୍ର ତାହା ସମ୍ଭବ ହୋଇପାରିନଥିଲା। ଓଡ଼ିଆ ଶିଶୁ ସାହିତ୍ୟରେ ତାଙ୍କର ବିଶେଷ କିଛି ଉଲ୍ଲେଖନୀୟ ଅବଦାନ ନଥିଲେ ମଧ୍ୟ ସେ ଛୋଟ ପିଲାଙ୍କ ପାଇଁ "ପିଲାଙ୍କ ମହାଭାରତ" ଶୀର୍ଷକ ଏକ ଗ୍ରନ୍ଥ ରଚନା କରିଥିଲେ। ଏହା ପଞ୍ଚାକ୍ଷରୀ ନିୟମରେ ଲିଖିତ। ମାତ୍ର ତାହା ସେତେବେଳେ ପ୍ରକାଶିତ ହୋଇ ନ ପାରି ତାହାର ପାଣ୍ଡୁଲିପି କେବେ କେଉଁଠି କିପରି ହଜିଗଲା, ସେ ସଂପର୍କରେ କୌଣସି ତଥ୍ୟ ଆମ ପାଖରେ ନାହିଁ। ପୁଣି ସେ ନୂତନ ଭାବରେ "ଓଡ଼ିଆ ବର୍ଣ୍ଣବୋଧ" ରଚନା କରିଥିଲେ। ତାହାର ପାଣ୍ଡୁଲିପି ମଧ୍ୟ ବର୍ତ୍ତମାନ ଆମ ପାଖରେ ନାହିଁ। ୧୯୪୩ ସାଲ୍‌ରେ ବରଗଡ଼ ଜର୍ଜ ହାଇସ୍କୁଲରୁ ମେଟ୍ରିକ୍ ପାସ୍ କରିଥିବା ଭୋଇପୁରା ନିବାସୀ (ବର୍ତ୍ତମାନ ସମ୍ବଲପୁର ଗୋବିନ୍ଦ ଟୋଲାରେ ବାସ କରୁଥିବା) ଶ୍ରୀଯୁକ୍ତ ଆଶୁତୋଷ ତ୍ରିପାଠୀଙ୍କ ସୌଜନ୍ୟରୁ ପ୍ରାପ୍ତ "ପିଲାଙ୍କ ମହାଭାରତ"ର କିୟଦଂଶ ନିମ୍ନରେ ପ୍ରଦତ୍ତ ହେଲା। ଲେଖକ ଶ୍ରୀଯୁକ୍ତ ଶଶିଭୂଷଣ ମିଶ୍ର ଶ୍ରେଣୀ ମାନଙ୍କରେ ବିଭିନ୍ନ ସମୟରେ ପାଠ ପଢ଼ାଇବା ସହିତ ନିଜ ରଚିତ "ପିଲାଙ୍କ ମହାଭାରତ"ର ପଙ୍‌କ୍ତିମାନ ଶୁଣାଉଥିବାର କଥା ତାଙ୍କର ପୁରାତନ ଛାତ୍ର ଶ୍ରୀଯୁକ୍ତ ତ୍ରିପାଠୀ ମହାଶୟ କହୁଥିଲେ। "ପିଲାଙ୍କ ମହାଭାରତ"ରେ କବି ଶଶିଭୂଷଣ ଲେଖିଥିଲେ :

"ଶୁଣ ସୁଜନ,
ଦେଇଣ ମନ।
ମହାଭାରତ,
କଥା ଅମୃତ
× × ×
କୁନ୍ତୀ ନନ୍ଦନ,
ନାମ ତା କର୍ଣ୍ଣ।
କର୍ଣ୍ଣରୁ ଜାତ,
ନାମ ବିଦିତ।

ପାଣ୍ଡବେ ସେହି,
ଗଣା ନୁହଇ ।
ପାଣ୍ଡବ ଗଣ,
ସେ ପାଞ୍ଚଜଣ ।
ଯୁଦ୍ଧରେ ସ୍ଥିର,
ସେ ଯୁଧିଷ୍ଠିର ।
ଭୀମ ମହାନ,
ସେ ବଳବାନ ।
ଅର୍ଜୁନ ବୀର,
ଗାଣ୍ଡୀବ ଧର ।
ମାଦ୍ରୀ ନନ୍ଦନ,
ନକୁଳ ଜାଣ ।
ଅଶ୍ୱରକ୍ଷକ,
ସେନା ନାୟକ ।
ସହଦେବ ଟି
ଜାଣଇ କୋଷ୍ଠୀ ।"

× × ×

ତଥ୍ୟ ସଂଗ୍ରହ – ଶ୍ରୀ ପ୍ରସନ୍ନକୁମାର ଦାଶ ।
(ବରଗଡ)

## ସମ୍ବଲପୁରୀ ଶବ୍ଦକୋଷ ସଂକଳନ :

ଯୁବକ ଶଶିଭୂଷଣ, ବରଗଡ଼-ଜର୍ଜ ହାଇସ୍କୁଲ୍‌ର ଶିକ୍ଷକ ଥିବା ସମୟରେ ୧୯୨୦ ରୁ ୧୯୨୮ ମସିହା ମଧ୍ୟରେ ଦୀର୍ଘ ଆଠ-ନଅବର୍ଷକାଳ ଅକ୍ଳାନ୍ତ ପରିଶ୍ରମ କରି ବହୁ ସମ୍ବଲପୁରୀ ଶବ୍ଦ ସଂଗ୍ରହ କରିଥିଲେ । ସେଥିପାଇଁ ତାଙ୍କୁ ପ୍ରାଚୀନ ସମ୍ବଲପୁରୀ ଲୋକଗୀତର ଗଭୀର ଅଧ୍ୟୟନ ପୂର୍ବକ ଗ୍ରାମାଞ୍ଚଳର ବିଭିନ୍ନ ବ୍ୟକ୍ତିବିଶେଷ ତଥା ତାଙ୍କର ସାହିତ୍ୟିକ-ପିତା, କବି ଓ ପଣ୍ଡିତ ଶ୍ରୀ ହରିହର ମିଶ୍ରଶର୍ମାଙ୍କ ପାଖରୁ ଶବ୍ଦ ସଂଗ୍ରହ କରିବାକୁ ପଡ଼ିଥିଲା । ଏକଦା ବରଗଡ଼ ଜର୍ଜ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ (ବ୍ରହ୍ମପୁର ନିବାସୀ) ଶ୍ରୀ ଶଙ୍କର ତ୍ରିପାଠୀ ଓ ଶ୍ରୀ ସୁଧାକର ଦାସ (କଟକ ଜିଲ୍ଲା ନିବାସୀ) ଥିଲେ ବରଗଡ଼ ମୁନ୍‌ସିଫ୍ । ଶଶିଭୂଷଣ ସେହିମାନଙ୍କ ସହିତ ସମ୍ବଲପୁରୀ ଭାଷାର ଗୁରୁତ୍ୱ ସଂପର୍କରେ ଆଲୋଚନା କରୁଥିବାବେଳେ ଏହି "ସମ୍ବଲପୁରୀ ଶବ୍ଦକୋଷ" ସଂକଳନର ସୃଷ୍ଟି । ସମ୍ବଲପୁରୀ ଭାଷାର

ଶବ୍ଦକୋଷ ସଂକଳନ କରିବାରେ ଶଶିଭୂଷଣ ମିଶ୍ର ହେଉଛନ୍ତି ଓଡ଼ିଶାରେ ପ୍ରଥମ ବ୍ୟକ୍ତି । ପରେ ମୁନ୍‌ସିଫ୍ ଶ୍ରୀଦାସ୍, କଟକ ରେଭେନ୍‌ସା କଲେଜର ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀଙ୍କୁ ଜଣାଇବାରୁ ସେ ଏହି ଶବ୍ଦକୋଷର ପ୍ରକାଶନ ଦାୟିତ୍ୱ ନେଇଥିଲେ, ମାତ୍ର ତାହା ଶଶିଭୂଷଣଙ୍କ ଜୀବଦ୍ଦଶାରେ ପ୍ରକାଶିତ ହୋଇପାରିଲା ନାହିଁ । ବର୍ତ୍ତମାନ ଏହାର ପାଣ୍ଡୁଲିପି ବି ନାହିଁ । ବହୁ ଅନୁସନ୍ଧାନ ପରେ ତାହା ଜଣାଗଲା ଯେ, ଶଶିଭୂଷଣ ମିଶ୍ରଙ୍କ ସଂକଳିତ "ସମ୍ବଲପୁରୀ ଶବ୍ଦକୋଷ"ର ପାଣ୍ଡୁଲିପି ଜନୈକ ଭଦ୍ରଚୋରଙ୍କ ହାତରେ ପଡ଼ି ଅନ୍ତର୍ଦ୍ଧାନ ହୋଇଗଲା । ଭଦ୍ରଚୋରଙ୍କ ଏଭଳି ବ୍ୟବହାର ତାଙ୍କର କବିମାନସରେ ଘୋର ଅଶାନ୍ତି ସୃଷ୍ଟି କରିଥିବ, ବହୁଦିନ ପର୍ଯ୍ୟନ୍ତ ସେ ବ୍ୟଥିତ ଓ ମଥିତ ହୋଇଥିବେ, ଏଥିରେ ସନ୍ଦେହ ନାହିଁ ।

ପରବର୍ତ୍ତୀ ସମୟରେ ଶଶିଭୂଷଣ ମିଶ୍ର ହୋଇଛନ୍ତି ସମ୍ବଲପୁରୀ ଭାଷା ଓ ସାହିତ୍ୟର ଜଣେ ମୁଗ୍ଧ ଆଲୋଚକ । ଓଡ଼ିଆ ଭାଷାପରି ସମ୍ବଲପୁରୀ ଭାଷା ଯେ ଏକ ସ୍ୱତନ୍ତ୍ର ଓ ସ୍ୱୟଂ ସଂପୂର୍ଣ୍ଣ ଭାଷା– ଏହା ଶଶିଭୂଷଣ ମିଶ୍ରଶର୍ମାଙ୍କ ଗଭୀର ଦୃଢ଼ୋକ୍ତି । ସମ୍ବଲପୁରୀ ଭାଷା ଓ ସାହିତ୍ୟ ପାଇଁ ଆମେ କ'ଣ କରିବା ? ସେ ସମ୍ବନ୍ଧରେ ସମ୍ବଲପୁରୀ ଭାଷାରେ ଅଭାବ ଅନୁଭୂତ ହେବାରୁ ନିଜ ଚେଷ୍ଟାରେ ବରଗଡ଼ଠାରେ ନିଜ ବସାରେ ଗୋଟିଏ ଆଲୋଚନା ସଭାର ଆୟୋଜନ କରିଥିଲେ । ଏହା ସମ୍ଭବତଃ, ୧୯୫୦-୫୫ ମସିହାର କଥା । ଏହି ଆଲୋଚନା ସଭାରେ ଯେଉଁମାନେ ଯୋଗଦାନ କରିଥିଲେ, ସେମାନେ ହେଲେ :

(୧) କବି ଶ୍ର�ୀ ଖଗେଶ୍ୱର ଶେଠ
(୨) ଶ୍ରୀ ସାଧୁଚରଣ ପଟ୍ଟନାୟକ
(୩) କବି ଶ୍ରୀ ଖଗେଶ୍ୱର ସାହୁ
(୪) ସାହିତ୍ୟିକ ଶ୍ରୀ କେଶବଚନ୍ଦ୍ର ମେହେର
(୫) ସାହିତ୍ୟିକ ଶ୍ରୀ ଶଶିଭୂଷଣ ମିଶ୍ର (ବୁଢ଼ାମାଷ୍ଟ୍ରେ)

ବରଗଡ଼ସ୍ଥିତ ମିଶ୍ରଶର୍ମାଙ୍କ ବସାରେ ଯେଉଁ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା, ତାହା ଥିଲା ମୁଖ୍ୟତଃ ସମ୍ବଲପୁରୀ ଭାଷା ଓ ସାହିତ୍ୟର ଉନ୍ନତି ସମ୍ବନ୍ଧରେ । ସେତେବେଳେ ଶଶିଭୂଷଣ ସମ୍ବଲପୁରୀ ଭାଷା ଓ ସାହିତ୍ୟ ସମ୍ବନ୍ଧରେ ଏକ ସୁଚିନ୍ତିତ ନିଜସ୍ୱ ଅଭିମତ ଲେଖିଥିଲେ । ତାହାର ଶୀର୍ଷକ ଥିଲା :

**ଆମ ଭାଷା ପାଇଁ ଆମେ କ'ଣ କରିବା ?**

(୧) ଏହି ଭାଷାର ଗୋଟିଏ ସାର୍ଥକ ବ୍ୟାକରଣ ବହି ହେଉ ।

(୨) ଚମତ୍କାର ଅର୍ଥ ପ୍ରତିପାଦନ କରୁଥିବା ଶବ୍ଦମାନଙ୍କର ଏକ "ସମ୍ବଲପୁରୀ ଶବ୍ଦବୋଧ" ଅଭିଧାନ ହେଉ ।

(୩) ସମ୍ବଲପୁରୀ ଭାଷାର ଶବ୍ଦ, କ୍ରିୟା ଇତ୍ୟାଦିର ବିଶେଷତ୍ୱ ଦେଖାଇ ଲେଖା ପ୍ରକାଶ କରିବା ସକାଶେ ଗୋଟିଏ ସାହିତ୍ୟ ପତ୍ରିକା ଆମର ଦରକାର ।

(୪) ସମ୍ବଲପୁରୀ ଗୀତ ଗୁଡ଼ିକର ଛନ୍ଦ ଓ ସ୍ୱରର ବୈଶିଷ୍ଟ୍ୟ ପ୍ରତିପାଦିତ ହେଉ ।

(୫) ଭାଷାର ଉନ୍ନତି ଲାଗି ଗୋଟିଏ ପଶ୍ଚିମାଞ୍ଚଳ ସମ୍ବଲପୁରୀ ସାହିତ୍ୟ ଏକାଡେମୀ ଗଠନ ଲାଗି କେନ୍ଦ୍ର ସାହିତ୍ୟ ଏକାଡେମୀ ଓ କେନ୍ଦ୍ର ସରକାରଙ୍କ ସହିତ ପତ୍ର ବିନିମୟ କରାଯାଉ । (ତଥ୍ୟ ସଂଗ୍ରହ : ଡ. କେଶବଚନ୍ଦ୍ର ମେହେର, ବରଗଡ଼)

ପରବର୍ତ୍ତୀ କାଳରେ ସମ୍ବଲପୁରୀ ଭାଷାର ଲେଖକମାନଙ୍କ ଅସହଯୋଗ ଫଳରେ ଶଶିଭୂଷଣଙ୍କ ସୁଚିନ୍ତିତ ଅଭିମତ ସବୁ କେବଳ ଚିନ୍ତାରେ ହିଁ ରହିଗଲା । ଏହା ହିଁ ଅତ୍ୟନ୍ତ ଦୁଃଖର ବିଷୟ ।

## ଶଶିଭୂଷଣଙ୍କ ବାଣୀ-ବନ୍ଦନା :

ଶଶିଭୂଷଣ ଆଜୀବନ ଶିକ୍ଷକ ଥାଇ ବାଣୀ-ବନ୍ଦନାରେ, ବାଣୀ-ଆରାଧନାରେ ନିଜକୁ ପୂର୍ଣ୍ଣପ୍ରାଣରେ ସମର୍ପଣ କରି ଦେଇଥିଲେ । ଅନ୍ୟ ଅର୍ଥରେ ସେ ଥିଲେ ଜଣେ ନୀରବ ସାହିତ୍ୟ ସାଧକ । ତାଙ୍କ ସାଧନାର ପଟାନ୍ତର କାହିଁ? ଧନାର୍ଜନ ଅପେକ୍ଷା ଜ୍ଞାନାର୍ଜନ ସକାଶେ ତାଙ୍କର ସରଳ ତଥା କୋମଳ କବିପ୍ରାଣ ସଦାବେଳେ ତତ୍ପର ଥିଲା । ବୀଣାପାଣି ତାଙ୍କୁ ନିରନ୍ତର ସତ୍ୟ ଓ ଧର୍ମ ପଥରେ ରକ୍ଷା କରିଥିଲେ । ତାଙ୍କର ଜୀବନ ଓ ପ୍ରତିଭାର ବିକାଶଧାରାକୁ ଗଠନ କରିଛନ୍ତି ଆଉ ଶଶିଭୂଷଣ ସ୍ୱୀକୃତି ପାଇଛନ୍ତି । ତେଣୁ ତାଙ୍କର କାବ୍ୟଶିଳ୍ପ ଓ ବିଜ୍ଞାନ ଚେତନା ଏତେ ଉନ୍ନତ ହୋଇ ପାରିଥିଲା । ତାଙ୍କ ରଚିତ "ସରସ୍ୱତୀ-ବନ୍ଦନା" କବିତାରେ କବି ଶଶିଭୂଷଣ ଲେଖିଛନ୍ତି :

"ସରସ୍ୱତି ! ପାଦପଦ୍ମେ ଏ ବିନତି
ବିରାଗ ବରଜି କରୁଣା ସରଜି
ଦିଅ ଦିନେ ଶୁଭଗତି । ଧ୍ରୁବପଦ ।
ଏକେନର ହନ୍ତା ପାପ ଅକଳନ୍ତା
ଦେବ ଦ୍ୱିଜେ ଅଭକତି,
କରୁଣା ପ୍ରକାଶି ପାପରାଶି ନାଶି
କଲ ମୁନୀନ୍ଦ୍ର ତଡ଼ତି ।
ହେଲେହେଁ ବ୍ରାହ୍ମଣ ମୂର୍ଖ ଅବାରଣ
ହୁଅନ୍ତେ. ଜଳେ ଭରତି,
ନ ବହିଣ ରୋଷ କାଟି ଜନ୍ମଦୋଷ
ଦେଲ କବିପତି ଗତି ।
ବୋଲାଅ ଭାରତୀ ମାତଃ ଭଗବତି
ଆମ୍ଭେ ଭାରତ ସନ୍ତତି,

କରୁଣା କୃପଣା ହେଲେ ହେବ ଊଣା
ତୁମ୍ଭ ନାମ ଗୁଣ ତତି ।
ଚାହୁଁ ନାହୁଁ ଧନ ଚିର ଯଉବନ
ଭିକ୍ଷା ଶ୍ରୀପଦେ ଭକତି,
ଦିଅ ଗୋ ଜନନି ପଙ୍କଜ ବାସିନି
ଦାସ୍ୟ ଶ୍ରୀଚରଣ କତି ।”

(ପୁନରାଗଛ ସିଦ୍ଧାର୍ଥ– ୨୦୦୨, ପୃ. ୪)

## ଜୀବନର ବିଭିନ୍ନ ପର୍ଯ୍ୟାୟ :

କବି ଶଶିଭୂଷଣ ଜଣେ ସରଳ ଓ ନିରାଡ଼ମ୍ବର ବ୍ୟକ୍ତି ଥିବାରୁ ସମସ୍ତଙ୍କ ସହିତ ଭଲ ଭାବରେ ମିଶି ପାରୁଥିଲେ । ସେତେବେଳେ ବରଗଡ଼ ଅଞ୍ଚଳରେ ଶଶିଭୂଷଣଙ୍କର ଖୁବ୍ ସୁନାମ ଥିଲା । ସେ ଶିକ୍ଷକ ଜୀବନରେ ଯେତିକି ସମ୍ମାନ ଓ ଆଦର ଲାଭ କରିଥିଲେ ତାହା ଭାଷାରେ ଅବର୍ଣ୍ଣନୀୟ । ସେ ଜୀବନର ବିଭିନ୍ନ ପର୍ଯ୍ୟାୟରେ ଆବିର୍ଭୂତ ହୋଇଛନ୍ତି । କେତେବେଳେ ଶିକ୍ଷକ, କେତେବେଳେ ଲେଖକ, କେତେବେଳେ କର୍ମୀ ଓ ସେବକ । ସାଧାରଣ ଜନତାଙ୍କ ବ୍ୟତୀତ ସେ ତାଙ୍କର ସମକାଳୀନ ସାହିତ୍ୟିକ ଓ ମହତ୍ ପୁରୁଷମାନଙ୍କ ସହିତ ସ୍ୱତନ୍ତ୍ର ସଂପର୍କ ସ୍ଥାପନ କରି ପାରିଥିଲେ । ବରଗଡ଼ରେ ତାଙ୍କର କୌଣସି ଶତ୍ରୁ ନଥିଲେ । ତାଙ୍କ ଜୀବନର ଅଳ୍ପ କେତୋଟି ଘଟଣାବଳୀ ଏଠାରେ ସ୍ୱତନ୍ତ୍ର ଅଥଚ ସଂକ୍ଷିପ୍ତ ଭାବେ ଉପସ୍ଥାପିତ ।

ଭକ୍ତକବି ମଧୁସୂଦନ ରାଓଙ୍କ ସହିତ ତାଙ୍କ ପିତା, ପଣ୍ଡିତ ହରିହର ମିଶ୍ରଙ୍କର କିଭଳି ସଂପର୍କ ସ୍ଥାପିତ ହୋଇଥିଲା, ସେ ସଂପର୍କରେ ଶଶିଭୂଷଣ ତାଙ୍କର ଅସଂପୂର୍ଣ୍ଣ ଆତ୍ମଚରିତରେ ଠାଏ ଉଲ୍ଲେଖ କରି କହିଛନ୍ତି :

> “ମୁଁ ବରଗଡ଼ ମାଇନର୍ ସ୍କୁଲ୍‌ରେ ପଢୁଥିବାବେଳେ ଓଡ଼ିଶା ସ୍କୁଲ୍ ସମୂହର ସାର୍କିଲ୍ ଇନ୍ସପେକ୍ଟର୍ (ସେ ସମୟରେ ଓଡ଼ିଶାରେ ଜଣେ ସାର୍କିଲ୍ ଇନ୍ସପେକ୍ଟର୍ ରହୁଥିଲେ) ବ୍ରହ୍ମର୍ଷି ମଧୁସୂଦନ ରାଓ ଥରେ ପରିଦର୍ଶନ କରିବାକୁ ଆସିଥିଲେ । ତାଙ୍କ ରଚିତ ‘ସାହିତ୍ୟ ତରଙ୍ଗ’ ପୁସ୍ତକ ୫ମ, ୬ଷରେ (ଆଜିକାଲି ୬ଷ, ୭ମ) ପଢ଼ା ହେଉଥିଲା । ଉକ୍ତ ପୁସ୍ତକରେ ତାଙ୍କର ସ୍ୱରଚିତ କବିତାମାନ ଥିଲା । ‘ନଦୀପ୍ରତି’ କବିତା କାମୋଦୀ ବୃତ୍ତରେ ଓ ‘ମହାରାଣୀ ଭିକ୍ଟୋରିଆ’ କବିତା ରସକୁଲ୍ୟା ବୃତ୍ତରେ ଲେଖା ହୋଇଥିଲା । ଯଥା :

“ଗିରିବର ନନ୍ଦିନୀ ଅଟୁତୁହିଁ ତଟିନୀ
ଗଭୀର ଗହ୍ୱର ଗର୍ଭରେ

ଥିଲୁତୁ ଗର୍ଭବାସେ ନିରୋଳେ ଅପ୍ରକାଶେ
ଲୋକ ଲୋଚନ ଆଗୋଚରେ ।'' (ନଦୀପ୍ରତି)
"ମହାମଣ୍ଣ ଶୋକ ତମସୀ ଛାୟା
ସହସା ବିସ୍ତାରି ବିରାଟ କାୟା
ଘୋଟି ଯାଇଅଛି ନିଖିଳ ମହୀ
ଦାରୁଣ ନିର୍ବେଦ ଅରୁତ ବହି
ନିଭଇଛି ମହାଶ୍ୱାସେ
ହର୍ଷ-ଦୀପ ଶିଖା ସହସ୍ର ପ୍ରଦେଶେ
କୋଟି କୁଟୀ ସୌଧବାସେ ॥"
(ମହାରାଣୀ ଭିକ୍ଟୋରିଆ)

ଭକ୍ତକବି ଶ୍ରୀରାଓ ବାପାଙ୍କୁ ପଚାରିଲେ କବିତା କିପରି ହୋଇଛି ବୋଲି– ବାପା ତ ନିର୍ଭୟମନା । ସେ କହିଲେ– "ଆଜ୍ଞା କବିତା ତ ଭଲ ହୋଇଛି ମାତ୍ର ଛନ୍ଦରେ ଦୋଷ ରହିଛି । କାମୋଦୀ ବୃତ୍ତର ପ୍ରତ୍ୟେକ ପଦର ୪ର୍ଥ ଧାଡ଼ି ଶେଷରେ ଓ ୮ମ ଧାଡ଼ି ଶେଷରେ 'ରେ ତରଙ୍ଗିଣୀ' ବା 'ରେ କଲ୍ଲୋଳିନୀ' ରହିବାର ଥିଲା । ସେହିପରି ରସକୁଲ୍ୟା ବୃତ୍ତର ପ୍ରତ୍ୟେକ ପଦର ୪ର୍ଥ ଧାଡ଼ି ଶେଷରେ ଓ ୭ମ ଧାଡ଼ି ଶେଷରେ 'ଯେ' ରହିବାର ଥିଲା ।" ତହୁଁ ଶ୍ରୀରାଓ ଟିକିଏ ବିଚଳିତ ହୋଇ 'ଆଛା ଶୁଣନ୍ତୁ ମୁଁ ଗାଉଛି' ବୋଲି ଉଚ୍ଚସ୍ୱରରେ ଯାହା ଲେଖିଥିଲେ ଗାଇଗଲେ । ତହୁଁ ବାପା ଦୁଇ ତିନି ଜଣ ଛାତ୍ରଙ୍କୁ ଉକ୍ତ ପଦମାନ ଗାଇବାକୁ କହିଲେ । ବାପାଙ୍କର ପୂର୍ବ ଶିକ୍ଷାମତେ ସେ ଛାତ୍ରମାନେ ସେ ପଦମାନ ଏପରି ମଧୁର ଭାବେ ପଞ୍ଚମତାନରେ ଗାଇଦେଲେ ଯେ ରାଓ ମୁଗ୍ଧ ହୋଇଗଲେ ଏବଂ ଛନ୍ଦଦୋଷ ଅଛି ବୋଲି ସ୍ୱୀକାର କଲେ । ତପ୍ରେ କେତେକ ଛାତ୍ରଙ୍କୁ ଗୋଟିଏ ଗୋଟିଏ ପଦର ଗଦ୍ୟ ଓ ଭାବାର୍ଥ ପଚାରି ଯାହା ଶୁଣିଲେ ସେଥିରେ ସେ ଚମତ୍କୃତ ହୋଇ କହିଲେ, "ସମ୍ବଲପୁରର ଲୋକମାନେ ଶୁଦ୍ଧ ଓଡ଼ିଆ କହିପାରନ୍ତି ନାହିଁ ପରା–ଆଜି ଏ ଛାତ୍ରମାନେ ଶୁଦ୍ଧ ଓଡ଼ିଆ ଭାଷାରେ କଠିନ କବିତାର ଭାବକୁ ସରଳ ପ୍ରାଞ୍ଜଳ ଭାବରେ ପ୍ରକାଶ କରିବା ଶୁଣି ମୁଁ ଯୁଗପତ୍ ବିସ୍ମିତ ଓ ବିମୁଗ୍ଧ । କୌଣସି ଛାତ୍ରର ଭାଷାରେ ଅଶୁଦ୍ଧ ଥିବାର ଶୁଣିବାକୁ ପାଇଲି ନାହିଁ ।" ଏହାଶୁଣି ବାପା ତାଙ୍କର ସାହିତ୍ୟ ନୋଟ୍‌ବୁକ୍‌କୁ ଶ୍ରୀ ରାଓଙ୍କୁ ଦେଖାଇ ଦେଲେ । ଶ୍ରୀ ରାଓ ଦେଖିଲେ ଯେ 'ସାହିତ୍ୟ ତରଙ୍ଗ' ପୁସ୍ତକରେ ଥିବା ତାଙ୍କ ରଚିତ

ପ୍ରତ୍ୟେକ କବିତାର ପ୍ରତି ପଦର ଗଦ୍ୟ ଓ ଭାବାର୍ଥ ଅତି ପ୍ରାଞ୍ଜଳ ଭାବରେ ମନୋହର ହସ୍ତାକ୍ଷରରେ ଲେଖା ହୋଇଅଛି । ସେ ତକ୍ଷଣାତ୍ ପଚାରିଲେ ଏସବୁ କିଏ ଲେଖିଛି ? ବାପା ମୁଁ ଲେଖିଛି ବୋଲି କହିବାମାତ୍ରେ ସେ କହିଲେ, "ଏ ଅଞ୍ଚଳରେ ଏପରି ଶିକ୍ଷକ ଅଛନ୍ତି ବୋଲି ମୋର ଧାରଣା ନଥିଲା । ଆମ ଅଞ୍ଚଳର ସ୍କୁଲମାନ ପରିଦର୍ଶନ କରି କୌଣସି ଶିକ୍ଷକଙ୍କଠାରୁ ଏଭଳି ଭାବାର୍ଥ ମୁଁ ଶୁଣିନାହିଁ । ଆଚ୍ଛା, ଆପଣ ଏତେ ପରିଶ୍ରମ କରି ସମସ୍ତ କବିତାର ଗଦ୍ୟ ଓ ଭାବାର୍ଥ ଏଡ଼େ ସୁନ୍ଦର ହସ୍ତାକ୍ଷରରେ ଲେଖିବାର ଉଦ୍ଦେଶ୍ୟ ? କାଳେ କ୍ଲାସ୍‌ରେ ପଢ଼ାଇଲା ବେଳେ ଭୁଲ୍ ହୋଇ-ଯାଇପାରେ ବୋଲି ? ବାପା କହିଲେ, "ନା ଆଜ୍ଞା, ତାହା ନୁହେଁ । ଛାତ୍ର ଓ ଶିକ୍ଷକ ମାନଙ୍କ ଅନୁରୋଧରେ ଏପରି କରାହୋଇଛି । କାରଣ ଏହି ସ୍କୁଲର ତଥା ଅନ୍ୟ ସ୍କୁଲମାନଙ୍କର ଛାତ୍ରମାନେ ଅବକାଶ ଦିନମାନଙ୍କରେ ଆସି ଏ ନୋଟ୍ ବୁକ୍‌ରୁ ଏ ଲେଖାଗୁଡ଼ିକ ଉତାରି ନିଅନ୍ତି । ହସ୍ତାକ୍ଷର ଭଲ ହୋଇ ନଥିଲେ ଉତାରିଲା ବେଳେ ଭୁଲ୍ ହୋଇଯିବାର ବିଶେଷ ସମ୍ଭାବନା ।" ଏହା ଶୁଣି ଶ୍ରୀରାଓ ବାପାଙ୍କୁ ଅଶେଷ ପ୍ରଶଂସା କଲେ ।''

(ଅପ୍ରକାଶିତ ଆତ୍ମ-ଚରିତ, ପୃ. ୮୩-୮୭)

ତା ୨୭-୫-୧୯୪୯ ମସିହାରେ ଶ୍ରୀ ବାଲୁଙ୍କେଶ୍ୱର ମିଶ୍ରଙ୍କ ତିରୋଧାନ ହେଲା । ଏହି ମର୍ମଦାହୀ ଘଟଣା ଶଶିଭୂଷଣଙ୍କୁ ଗଭୀର ବେଦନା ଦେଇଥିଲା । ତାଙ୍କ ବିୟୋଗରେ କବି ଶଶିଭୂଷଣ ମିଶ୍ର ଲେଖିଥିଲେ :

"କି ବାରତା ବାରତାବହ କହିଲୁ ।
ବାରତାନଳେ ଦେହବନ ଦହିଲୁ ।
ବାଲୁଙ୍କେଶ୍ୱର ନାହିଁ ଆଉ ଜଗତେ ?
ମୋ ଗଉରୀ କି ହୁଏ ନାହିଁ ପରତେ ।

× × ×

ବୁଲି ଗଲେ କହିବେ ଯେ 'ନମସ୍କାର'
କି ବୋଲି ବୁଝାଇବି ହୃଦୟ ତାର ।

× × ×

କି ସେନେହ ନୟନେ ଚାହିଁ ଏ ଛାରେ
ପରପାରେ ଚଳିଲ ନ କହି ବାରେ ।
'ଶଶିବାବୁ' ଶବଦ ଶୁଣିବି କାହୁଁ ।

ମଧୁରେ 'ନମସ୍କାର' ଦେବ କେ ଆଉ ।"

(ଶ୍ରୀ ବାଲୁଙ୍କେଶ୍ୱର ମିଶ୍ର ଓକିଲଙ୍କ ମହାପ୍ରୟାଣେ, ପୁନରାଗଚ୍ଛ ସିଦ୍ଧାର୍ଥ,୨୦୦୨ ପୃ୨୩)

ତାଙ୍କ କବିତାରେ ଶୈଳୀ ବ୍ୟବହାରର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ମଣିଷ ଜୀବନର ବାସ୍ତବତା, ସତ୍ୟତା ଆଦିର ସଫଳ ରୂପାଙ୍କନ । ଏହି କବିତାରେ ଥିବା ଉପରୋକ୍ତ କେତୋଟି ପଦ ତାଙ୍କୁ ଜଣେ ସଚେତନ ତଥା କୁଶଳୀ ଶିଳ୍ପୀର ପରିଚୟ ପ୍ରଦାନ କରିଥାଏ । ତେଣୁ ଶଶିଭୂଷଣ ସଚେତନ କାବ୍ୟଶିଳ୍ପୀ ଭାବରେ ପ୍ରାଧାନ୍ୟ ଦେଇଥିବାରୁ ତାଙ୍କର କାବ୍ୟଶିଳ୍ପ ଅଧିକତର ଋଦ୍ଧିମନ୍ତ ଓ ପ୍ରଶସ୍ତ ।

ଶଶିଭୂଷଣ ତାଙ୍କର ଜଣେ ପ୍ରିୟ ଛାତ୍ର ଶ୍ରୀ ଶାନ୍ତିଲାଲ ଯୋଷୀ (ଲେଖକ-ଦୟାଲାଲ ଯୋଷୀଙ୍କ ବଡ଼ଭାଇ)ଙ୍କ କରୁଣ ମହାପ୍ରୟାଣରେ ତାଙ୍କର ଶିକ୍ଷକ ପ୍ରାଣରେ ଗଭୀର ଆଘାତ ସୃଷ୍ଟି କରିଥିଲା । ପ୍ରିୟଛାତ୍ର ଶାନ୍ତିଲାଲ ଯୋଷୀଙ୍କ ବିୟୋଗରେ କବି ଶଶିଭୂଷଣ ଲେଖିଥିଲେ :

"କି କହିବି ଭାଇ ହୃଦ ହୁଏ ଦାହି
ଛନକା ପଶେ ଛାତି ଦେଶେ
ମୁଣ୍ଡଯାଏ ଘୂରି ତୁଣ୍ଡଯାଏ ଥରି
ରସନା ରସହୀନେ ବସେ ।
ସୋଦରେ, କି ହେଲା କି ହେଲା କି ହେଲା
ବଚନ ନ ଫୁଟୁଁ ଶୂନ୍ୟ ଗଗନରୁ
ନିର୍ଘାତ ଚଡ଼କ ପଡ଼ିଲା ।
କାହିଁ ଆଉଶାନ୍ତି କାହିଁ କିଆ କାନ୍ତି
କାହିଁ ଆଉ ସେ ଦିବ୍ୟଠାଣି
ଯଯାତି ଭୂମିକା- ବେଶେ ଠିଆ ହେବା
ସ୍ମରିଲେ ରକ୍ତ ହୁଏ ପାଣି ।
ସୋଦରେ, କି ହେଲା କି ହେଲା କି ହେଲା
ସେନେହ ସୂତାରେ ବାନ୍ଧିଣ ସରବେ
ନିଜେ ଖସିଣ ପଳାଇଲା ।"

(ପୁନରାଗଚ୍ଛ ସିଦ୍ଧାର୍ଥ – ୨୦୦୨, ପୃ. ୨୧)

ଶଶିବାବୁଙ୍କ ଜୀବନ ଥିଲା ଯେପରି, ତାଙ୍କର ରଚନାବଳୀ ବି ସେପରି ସଂଯତ ଓ ମାର୍ଜିତ । ନିଜେ ଯେପରି ଅଧ୍ୟୟନଶୀଳ ଥିଲେ ଅନ୍ୟକୁ ନୂତନ ତଥା ମୌଳିକ ରଚନା ସୃଷ୍ଟି କରିବାପାଇଁ ସେପରି ପ୍ରେରଣା ଦେଉଥିଲେ । ଅନ୍ୟର ପାଣ୍ଡୁଲିପିକୁ ସଂଶୋଧନ କରିବାରେ ତାଙ୍କର ସେତିକି ପ୍ରବେଶ ଥିଲା । ତାଙ୍କ ଜୀବନରେ ଏଭଳି ବହୁ ଗୁରୁତ୍ୱପୂର୍ଣ୍ଣ ଉଦାହରଣ ରହିଛି । ଏକଦା ପଶ୍ଚିମ ଓଡ଼ିଶାର ଅନ୍ୟତମ ପ୍ରତିଭାଶାଳୀ କବି ଖଗେଶ୍ୱର

ସାହୁଙ୍କ ଚରିତ "ଶ୍ରୀ ଗୌର ଗୋବିନ୍ଦ" ଚଉତିଶା କାବ୍ୟ ପାଠକରି ଶଶିବାବୁ ତାହାର ସଂଶୋଧନପୂର୍ବକ ଉଚ୍ଚ ଅଭିମତ ଦେଇଥିଲେ ଓ ସେହି କାବ୍ୟଟି ୧୯୨୯ ମସିହାରେ ପ୍ରକାଶିତ ହୋଇଥିଲା ବୋଲି କବି ଖଗେଶ୍ୱର ସାହୁ ଠାଏ ଉଲ୍ଲେଖ କରିଛନ୍ତି । କେବଳ କାବ୍ୟ-କବିତା ସଂଶୋଧନ, ପରିବର୍ତ୍ତନ କିମ୍ବା ପରିବର୍ଦ୍ଧନ ସକାଶେ ନୁହେଁ, ସେ କାଳରେ ଭାରତର ବିଶିଷ୍ଟ ଦର୍ଶନ ଶାସ୍ତ୍ରର ଅଧ୍ୟାପକମାନଙ୍କ ଥେସିସ୍‌ର ବିଷୟବସ୍ତୁ କ'ଣ ହେବ ସେ ସଂପର୍କରେ ନିଜର ସୁଚିନ୍ତିତ ମତାମତ ଜଣାଇ TOPIC ନିର୍ବାଚନ କରି ଦେଉଥିଲେ । ଏ ସଂପର୍କରେ ପ୍ରଫେସର୍ ମୀନକେତନ ପୁରୋହିତ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶଙ୍କୁ ଲିଖିତ ଖଣ୍ଡେ ପତ୍ରରେ ଶଶିଭୂଷଣ ମିଶ୍ରଶର୍ମାଙ୍କ ଭାରତୀୟ ଦର୍ଶନ ଶାସ୍ତ୍ର ଉପରେ ଥିବା ଦୃଷ୍ଟିଭଙ୍ଗୀ ଓ ପାଣ୍ଡିତ୍ୟ ସମ୍ବନ୍ଧରେ ଉଲ୍ଲେଖ କରି ଲେଖିଥିଲେ ।

> "୧୯୫୪ ସାଲ୍‌ର କଥା । ମୁଁ ଦଶହରା ଛୁଟିରେ ପୁରୀରୁ ବରଗଡ଼କୁ ଆସିଥିଲି । ମୋର ପୂଜ୍ୟଗୁରୁ ଶଶିଭୂଷଣ ମିଶ୍ରଙ୍କ ସହିତ ତାଙ୍କ ଗୀତା ହଷ୍ଟେଲ୍ ବାସଭବନରେ ସାକ୍ଷାତ୍ କଲି । ଶଶିବାବୁ ଶ୍ରୀଅରବିନ୍ଦଙ୍କ 'ସାବିତ୍ରୀ' ମହାକାବ୍ୟ ପାଠ କରୁଥିଲେ । ମୋତେ ପଚାରିଲେ, "ମୀନକେତନ ତୁମେ ତ ଏ କାବ୍ୟ ପଢ଼ିଥିବ । – "which according to you, is the essense of this grand narrative ?" ମୁଁ ସସଂଭ୍ରମରେ କହିଲି– "The grand rolling verse is enchonting. The flight of poetic is imagination is enrapturing." "ସାର୍ ହସିଲେ, don't you see that the eternal reality in the substraction is the essence ?" — ଛୁଟି ସରିଗଲା ! ମୁଁ ପୁରୀକୁ ଫେରିଗଲି । ମୋର ସହକର୍ମୀ ଶ୍ରୀ ସତ୍ୟବାଦୀ ମିଶ୍ର (ଉତ୍କଳମଣି ଗୋପବନ୍ଧୁ ଦାଶଙ୍କ ପୌତ୍ର ।) ଦର୍ଶନର ଅଧ୍ୟାପକ ଥିଲେ । ଶ୍ରୀଅରବିନ୍ଦଙ୍କ ଦର୍ଶନ ଉପରେ ଗବେଷଣା କରୁଥିଲେ । ମୋତେ ପଚାରିଲେ, "ପୁରୋହିତ ବାବୁ, ଆପଣ ତ ଇଂରାଜୀ ଅଧ୍ୟାପକ । ମୋତେ ଗୋଟିଏ suitable topic ବାଛି ଦିଅନ୍ତୁ ।'' ମୁଁ ନମ୍ରତାର ସ୍ୱରରେ କହିଲି, "ସାର୍, ମୋର ଜ୍ଞାନ ସୀମିତ । 'ସାବିତ୍ରୀ' ମହାକାବ୍ୟ ପଢ଼ିଛି ଯେ ବୁଝିନାହିଁ । ତେବେ ମୋର ସାର୍ ପଣ୍ଡିତ ଶଶିଭୂଷଣ ମିଶ୍ରଶର୍ମା କହିଛନ୍ତି, "Eternal reality is the essense of Savitri, the grand narrative of Sri Aurobindo !" ଆନନ୍ଦରେ ଅଧୀର ହୋଇ ସତ୍ୟବାଦୀ ତା' ପରଦିନ ବନାରସକୁ ଗଲେ । ତାଙ୍କ ପ୍ରଫେସର ଡ. ମୈତ୍ର ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଦର୍ଶନ ଅଧ୍ୟାପକଙ୍କ ସହିତ ସାକ୍ଷାତ୍ କରି ଏହି ବିଷୟ କହିଲେ । ଡ. ମୈତ୍ର ଜଣେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଦର୍ଶନ ଅଧ୍ୟାପକ, ଷଡଦର୍ଶନର Authority ଡ. ରାଧାକ୍ରିଷ୍ଣନ୍‌ଙ୍କ ସହକର୍ମୀ ଓ

ବନ୍ଧୁ । ଡ. ମୈତ୍ର ପଚାରିଲେ, "Satyabadi, tell me who suggested this topic to you ? ସତ୍ୟବାଦୀ ବାବୁ କୃତଜ୍ଞତାର ସ୍ୱରରେ କହିଲେ, "ଜର୍ଜ୍ ହାଇସ୍କୁଲ ବରଗଡର ଜଣେ ପ୍ରବୀଣ ଶିକ୍ଷକ ପଣ୍ଡିତ ଶଶିଭୂଷଣ ମିଶ୍ର ଶର୍ମାଙ୍କ ଉକ୍ତିକୁ ମୁଁ ଏହି Topic ସଂଗ୍ରହ କରିଛି । ଆପଣଙ୍କ ମତାମତ ଲୋଡୁଛି ।'' ଡ. ମୈତ୍ର ଶଶିବାବୁଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ପ୍ରଦର୍ଶନ କରି କହିଲେ, "ତୁମ ଥେସିସ୍‌ର ଶୀର୍ଷକ ହେବ, "Reality as a value in Sri Aurobindo" ମୁଁ guide କରିବି । ଡ. ରାଧାକ୍ରିଷ୍ଣନ୍ ଏହା ଉପରେ ମନ୍ତବ୍ୟ ଦେବେ । ଶଶିବାବୁଙ୍କୁ ଦୁହେଁ କୃତଜ୍ଞତା ଜଣାଇବା ।'' ଏହି ସନ୍ଦର୍ଭ ଶ୍ରୀ ଅରବିନ୍ଦଙ୍କ ସାଧନା ଓ ସିଦ୍ଧି ଉପରେ ଆଲୋକପାତ କରି ସାରା ବିଶ୍ୱର କବି, କୋବିଦ, ସାଧକ, ଦାର୍ଶନିକମାନଙ୍କ ମନ, ପ୍ରାଣ ଓ ବୁଦ୍ଧିରେ ଆଲୋଡନ ସୃଷ୍ଟିକରି ବିଶ୍ୱସାହିତ୍ୟର ଅମୂଲ୍ୟରତ୍ନ ହୋଇ ରହିଥିବ ।

ଡ. ରାଧାକୃଷ୍ଣନ୍ ଏହି ଥେସିସ୍‌ର ଭୂୟସୀ ପ୍ରଶଂସା କରିଛନ୍ତି । ସାବିତ୍ରୀ ମହାକାବ୍ୟ କବିର କଳ୍ପନା ବିଳାସ ନୁହେଁ । ବାସ୍ତବତା ଉପରେ, ସତ୍ୟ ଉପରେ ଆଧାରିତ ଏକ ମହାକାବ୍ୟ । ଧନ୍ୟ ସେ ଶଶିବାବୁ । ସେ କାଳରେ ସମ୍ୱଲପୁରରେ କେତେ ବଡ଼ ବିଦ୍ୱାନ୍ ଥିଲେ । କାହାଁ ଗଯେ ଯେ ଲୋଗ୍ ?'' – (ପ୍ରଫେସର୍ ମୀନକେତନ ପୁରୋହିତଙ୍କ ହାତଲେଖା ଚିଠି ।)

ସେ ସମୟରେ ଶିକ୍ଷକମାନେ କିଭଳି ଦାୟିତ୍ୱବାନ୍, ପରିଶ୍ରମୀ ଓ ସମୟାନୁବର୍ତ୍ତୀ ଥିଲେ ତାହାର ସୂଚନା ଦେଇ ଶିକ୍ଷକ ଶଶିଭୂଷଣ ଲେଖିଛନ୍ତି :

"ସେ କାଳରେ ଶିକ୍ଷକମାନେ ଗୋଟିଏ ଗୋଟିଏ ଶ୍ରେଣୀର ସଂପୂର୍ଣ୍ଣ ଦାୟିତ୍ୱରେ ରହୁଥିଲେ । ତେଣୁ ଶିକ୍ଷକମାନଙ୍କୁ ଶ୍ରେଣୀରେ ପଢ଼ା ହେଉଥିବା ସମସ୍ତ ବିଷୟରେ ଜ୍ଞାନ ଅର୍ଜନ କରିବାକୁ ହେଉଥିଲା । ଏତଦ୍ୱାରା ଶିକ୍ଷକଙ୍କୁ ବହୁତ ଜାଣିବାର ହେବାକୁ ପଡୁଥିଲା । ତେଣେ ଛାତ୍ରମାନଙ୍କ ଉପରେ ଶିକ୍ଷକଙ୍କର ପୂର୍ଣ୍ଣ ପ୍ରଭାବ ପଡ଼ି ପାରୁଥିଲା ।'' (ଅପ୍ରକାଶିତ ଆତ୍ମଚରିତ, ପୃ.୩୩)

## ଗଙ୍ଗାଧର କାବ୍ୟ-ଚର୍ଚ୍ଚା

ସ୍ୱଭାବକବି ଗଙ୍ଗାଧରଙ୍କ କାବ୍ୟ-ପ୍ରତିଭା ସମଗ୍ର ଓଡ଼ିଶାରେ ପଠିତ ଓ ବହୁଭାବରେ ଆଲୋଚିତ । ତାଙ୍କର କବି ପ୍ରତିଭା କାହାକୁ ବା ମୁଗ୍ଧ-ବିସ୍ମୟ-ତନ୍ମୟ କରିନାହିଁ । ଗଙ୍ଗାଧରଙ୍କ କାବ୍ୟ-ରସ ଆସ୍ୱାଦନରୁ କବି ଶଶିଭୂଷଣ ବା ବାଦ୍ ପଡ଼ନ୍ତେ କିପରି ? ଶିକ୍ଷକ ଓ ସାହିତ୍ୟିକ ଜୀବନର ପ୍ରାଥମିକ ପର୍ଯ୍ୟାୟରେ ସେ ଗଙ୍ଗାଧରଙ୍କୁ ବହୁ ଦିଗରୁ ବିଶେଷ ଭାବରେ ଅଧ୍ୟୟନ କରିଛନ୍ତି । ଅଧ୍ୟୟନ କରି ନିଜର କ୍ଷେତ୍ର ପ୍ରସ୍ତୁତ କରିଛନ୍ତି । ସେହି

କ୍ଷେତ୍ର ମଧ୍ୟରେ ଧୀରେ ଧୀରେ ତାଙ୍କର ସାହିତ୍ୟିକ ଓ କର୍ମଜୀବନର ଆରମ୍ଭ ହୋଇଛି । ୧୯୬୨ ମସିହାରେ ସମଗ୍ର ଓଡ଼ିଶାରେ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ଜନ୍ମଶତବାର୍ଷିକୀ ଜୟନ୍ତୀ ମହାସମାରୋହରେ ପାଳିତ ହୁଏ । ସେହି ଉପଲକ୍ଷ୍ୟରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଅନେକ ସଂକଳନ ଓ ସ୍ମରଣିକା ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ ପଶ୍ଚିମ ଓଡ଼ିଶାର ଅନ୍ୟ ଏକ ସାହିତ୍ୟ ଅନୁଷ୍ଠାନ "ଖଗେଶ୍ୱର-ସାହିତ୍ୟ-ସମିତି" ପଲସଦାରୁ କବି ଖଗେଶ୍ୱର ଶେଠଙ୍କ ସଂପାଦନାରେ "ପୁଷ୍ପାଞ୍ଜଳି" ନାମ୍ନୀ ଖଣ୍ଡେ ମୂଲ୍ୟବାନ୍ ସ୍ମରଣିକା ପ୍ରକାଶିତ ହୋଇଥିଲା ଓ ସେଥିରେ ଶଶିଭୂଷଣ ମିଶ୍ରଙ୍କ "ଦେବ ଶିଶୁ-ଦର୍ଶନେ" ଶୀର୍ଷକ ଗୋଟିଏ ଦୀର୍ଘ କବିତା ପ୍ରକାଶିତ । ସେହି କବିତାଟି ବର୍ତ୍ତମାନ ପାଠକମାନଙ୍କ ସକାଶେ ପୂର୍ଣ୍ଣରୂପେ ଉଦ୍ଧାର କରାଗଲା :

### ଦେବ ଶିଶୁ-ଦର୍ଶନେ

ଆଜି ସେ ବାସର ମହା ଶକ୍ତିଧର
ଆସିଥିଲେ ମର ଧରଣୀ,
ଆଜି ସେ ବାସର ଅତୁଳ କୁମର
ତନୟ ଲଭିଲା ଜନନୀ;
ଉତ୍କଳ; ସାର୍ଥକ ହେଲା ବରପଲ୍ଲୀ,
ଚୈତନ୍ୟ ଭବନ ଆନନ୍ଦ ସଦନ
ଅକଳନ ଲୋକ ଗହଳି,
ଭାଇରେ, ସାର୍ଥକ ହେଲା ବରପଲ୍ଲୀ । ୧ ।
ଏବେ ପୌର୍ଣ୍ଣମାସୀ ଚନ୍ଦ୍ରମା ପ୍ରକାଶି
ବିମଳ ଧବଳ କିରଣ
ଦେଇଥିଲା ମାଜି ପୁରପଥ ରାଜି
ବାଳ ବୃଦ୍ଧ ଯୁବା ବଦନ
ତହିଁକି; ମନ୍ଦିର ଘଣ୍ଟ ଘଣ୍ଟାସ୍ୱନ
ଧୂପ ମହ ମହ ଜନ ଗହ ଗହ
କରୁଥିଲା ମନ ଉଛନ୍ନ
ଭାଇରେ, ଆଜି ବାଜି ପଦ ଯେସନ । ୨ ।

ଚଇତନ ପୁତ୍ର ପଗା ପତି ସୂତ୍ର
ଧରି ଚାଲିଲା କୁହାକୁହି
ତନ୍ତୀଘର କନ୍ୟା ଭାଗ୍ୟବତୀ ଧନ୍ୟା

ଏ ପୁତ୍ର ଗର୍ଭେ ଥିଲା ବୁହି
ଦେଖତ, ରଜାଘର ପୁଅ ସମାନ
ଗଜା ବୟସରେ ରଜା ଦେହ ଥରେ
ଭାବ ନ ଭାଙ୍ଗିବ କା' ମନ,
ଦେଖତ, କପାଳ କେତେ ତେଜୀୟାନ । ୩ ।

ମାଆ ସମଲାଇ ଦେଇଛନ୍ତି ଚାହିଁ
ଏ ପୁଅର କିଛି ନୋହିବ,
ମାତା କି ମରଡ଼ି କିବା ଘଡ଼ଘଡ଼ି
ଏହାର କିଛି ନ କରିବ
ଭାଇରେ, ଯେ ଲୁଗା ବୁଣିବ ଏ' ହାତ
ଭଲ ଭଲ କାରି- ଗର ଆଖି ଫାରି
ଦେଖି ପାଲଟିଯିବେ କାନ୍ଥ
ହୋଇବ, ମେହେର କୁଳ ନରନାଥ । ୪ ।

ନିୟତି ଦେବତା ଦୋହଲାଇ ମଥା
ବୋଲେରେ ଉଶ୍ୱାସପୁଟିଆ
ତୁରଙ୍ଗମ ଗତି ମେଘ ମନ୍ଦ୍ର ଶକ୍ତି
ନର ଭାଗ୍ୟ କି ନାରୀ ହିୟା
କିଅବା, ବୃଷ୍ଟି ଅନାବୃଷ୍ଟି ଆବର
ତୁମ୍ଭ ପରି ନର କେତେକ ମାତର
ନଜାଣନ୍ତି ସ୍ୱୟଂ ଅମର
ଶୁଣହେ, ସିଦ୍ଧାନ୍ତ ବଚନ ମୋହର । ୫ ।

ଏ ଯେଉଁ ନନ୍ଦନ ଚୈତନ୍ୟ ସଦନ
ଆଜି କରୁଛି ଆଲୋକିତ
ଉତ୍କଳ ଭାଷା ସୁମଧୁର ଆଶା
ଦିନେ କରିବ କୁସୁମିତ
ତା'ବାସ, ଦିନେ ଡେଇଁ ସିନ୍ଧୁ ସପତ
ଶ୍ୱେତ ଦ୍ୱୀପେଶ୍ୱରୀ ନଣ୍ଡନ ନଗରୀ
ଗାତ୍ର ପରିଶିବ ଏ ସତ୍ୟ
ଶୁଣରେ, ମନେ ରଖିଥାଅ ସତତ । ୬ ।

ରାଜନ୍ୟ ମଣ୍ଡଳି ସିଂହାସନୁ ଢ଼ଳି
ହୋଇବେ ଦିନେ ତୁମ୍ଭ ସମ
ରାଇଜ ନଥାଇ ରାଜନ ବୋଲାଇ
ସହିବେ ଶରମ ବିଷମ
କିନ୍ତୁ ହେ, ଦେଖୁଛ ଏ ଯେଉଁ ନନ୍ଦନ
ଉଷାରାଣୀ ରାଜ୍ୟେ କବୀନ୍ଦ୍ର ସମାଜେ
ମାଡ଼ି ବସିବ ଉଚ୍ଚାସନ
ଶୁଣିଥ, ମୋହର ସିଦ୍ଧାନ୍ତ ବଚନ । ୭ ।

ପୁରାତନ ସଙ୍ଗେ ନୂତନକୁ ରଙ୍ଗେ
ମିଶାଇ ଗୁନ୍ଥି କାବ୍ୟହାର
ଭାଷା ମହାରାଣୀ କମ୍ବୁକଣ୍ଠେ ଆଣି
ପିନ୍ଧାଇବ ନିଷ୍ଠେ ବିଚାର
ସେହାର, କେବେହେଁ ନୋହିବ ମଳିନ
ହେଲେ ମାଜି ଘଷି ଦେଖୁଥିବ ବସି
ଜିକି ମାରିବ ବହୁଦିନ
ସେ ହାର, କେବେହେଁ ନୋହିବ ମଳିନ । ୮ ।

ନିୟତି ବଚନ ଅନ୍ୟଥା ରଚନ
ହେବାର ଶୁଣାନାହିଁ କେବେ
ଆମ୍ଭ ଗଙ୍ଗାଧର ଖିଳ ଉତ୍କଳର
କବିକୁଳ ମଉଳି ଏବେ
ତାଙ୍କର, 'କୀଚକବଧ' 'ତପସ୍ୱିନୀ'
ଓଡ଼ିଆ ଜାତି ଜୀବିତ ଥିବାଯାଏ
କର୍ଣ୍ଣେ ବାଜିବ କିଣିକିଣି
ଭାଇରେ, ମୃତ୍ୟୁକୁ ହେଲେ ଗଲେ ଜିଣି ।୯ ।
(ପୁଷ୍ପାଞ୍ଜଳି – ୧୯୬୨, ପୃ.୨୮-୩୧)

କବି ଶଶିଭୂଷଣଙ୍କ "ଦେବଶିଶୁ-ଦର୍ଶନେ" କବିତାରେ ଆମେ ଜାଣିବାକୁ ପାଉଁ ଯେ, ମେହେରଙ୍କ ଜୀବନ ଓ କାବ୍ୟର ଯଥା ସମ୍ଭବ ବାସ୍ତବ ଚିତ୍ରଟିଏ ସେ ଦେଇଛନ୍ତି । ପୁଣି କବିତାରେ କବିଙ୍କ ଭାବ ସଂପଦ ସହିତ ଶିଳ୍ପକଳାରେ ସଂଗୋପିତ ହୋଇଥିବା ମୌଳିକତା ପାଠକପାଠିକାଙ୍କୁ ମୁଗ୍ଧ-ଚକିତ କରେ । ସମଗ୍ର ନଅଗୋଟି ପଦ ମଧ୍ୟରେ ସେ ଅତୁଳନୀୟ

ଭାବ ସଂପଦ ସୃଷ୍ଟି କରିଯାଇଛନ୍ତି । ଗଙ୍ଗାଧରଙ୍କ ଜୀବନ ଶୈଳୀକୁ କିଭଳି ଭାବେ ସେ ରୂପାୟନ କରିଛନ୍ତି ଏଥିରୁ ତାହା ସ୍ପଷ୍ଟ ବୁଝାପଡ଼େ ।

ଶଶିଭୂଷଣ, ପୂର୍ବେ ଗଙ୍ଗାଧର ସାହିତ୍ୟ ଅଧ୍ୟୟନ କରି ନିଜର ଯେଉଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ ପରବର୍ତ୍ତୀ କାଳରେ ସେହି କ୍ଷେତ୍ର ବଳିଷ୍ଠ ଓ ପରିପୁଷ୍ଟ ହୋଇଛି । ଯେଉଁ କ୍ଷେତ୍ର ପ୍ରସ୍ତୁତ କରିଥିଲେ ସେହି କ୍ଷେତ୍ରରେ ପ୍ରଥମ କରି ଗଙ୍ଗାଧରଙ୍କ କେତେକ କବିତାକୁ ଇଂରାଜୀରେ ଅନୁବାଦ କରିଥିଲେ । ସେଗୁଡ଼ିକ ହେଲା –

1. Devotion (ଭକ୍ତି)
2. Grief of the Fire-fly : (ଖଦ୍ୟୋତର ଖେଦ)
3. All Sweet (ମଧୁମୟ)
4. All Nectar-Like (ଅମୃତମୟ)
5. Fruits of Folly (ଜ୍ୟେଷ୍ଠଜାତିର ଅପକର୍ମର ପରିଣାମ)
6. Greatness (ମହିମା)

ଗଙ୍ଗାଧରଙ୍କ ଏହି ଛଅଟି କବିତା ପ୍ରଥମ ଥର ପାଇଁ ଶଶିଭୂଷଣଙ୍କ ଦ୍ୱାରା ଅନୁଦିତ ହୋଇ "Gleanings from Gangadhar" ଶୀର୍ଷକ ଏକ ପୁସ୍ତିକା ୧୯୬୦ ମସିହାରେ ପ୍ରକାଶିତ ହୋଇ ବିଶେଷ ଲୋକପ୍ରିୟ ହୋଇଥିଲା । ଏହି ପୁସ୍ତିକା ପ୍ରକାଶିତ ହେବାର ପ୍ରାୟ ପାଞ୍ଚ ବର୍ଷ ପରେ ତାର ଏକ ବିଜ୍ଞାପନ ଦୈନିକ "ମାତୃଭୂମି"ର "ଗ୍ରନ୍ଥସମୀକ୍ଷା" ଶୀର୍ଷକରେ ପ୍ରକାଶିତ । ସମକାଳୀନ ଓଡ଼ିଶାର ଅନ୍ୟାନ୍ୟ ପତ୍ର ପତ୍ରିକା, ସମ୍ବାଦ ପତ୍ରରେ ଏହାର ପୁସ୍ତକ ସମୀକ୍ଷା ପ୍ରକାଶିତ ହୋଇଥିବା ସମ୍ଭବ । "ମାତୃଭୂମି"ରେ ପ୍ରକାଶିତ ସମୀକ୍ଷାଟି ଏହିପରି :

**ଗ୍ରନ୍ଥସମୀକ୍ଷା**

"ସ୍ୱଭାବ କବି ଗଙ୍ଗାଧର ମେହେରଙ୍କ ଅଳ୍ପ କେତୋଟି ସୁନିର୍ବାଚିତ କବିତାର ଇଂରାଜୀ ଅନୁବାଦ (ଶ୍ରୀ ଶଶିଭୂଷଣ ମିଶ୍ରଙ୍କ କର୍ତ୍ତୃକ) ଏହି ପୁସ୍ତିକାଟିରେ ସଂକଳିତ ହୋଇଛି । ପ୍ରକାଶ କରିଛନ୍ତି ଶ୍ରୀ ଦୁର୍ଗାପ୍ରସାଦ ମିଶ୍ର, ବରଗଡ଼ (ସମ୍ବଲପୁର) । ମୂଲ୍ୟ ୫୦ ପଇସା । ଶ୍ରୀ ମିଶ୍ରଙ୍କର ଉଦ୍ୟମ ବାସ୍ତବିକ ପ୍ରଶଂସାର୍ହ । ଏହାଦ୍ୱାରା ଗଙ୍ଗାଧରଙ୍କ କାବ୍ୟ ପ୍ରତିଭାକୁ ସେ ଅଣ ଓଡ଼ିଆ ରସଜ୍ଞ ପାଠକଙ୍କ ସହ ପରିଚିତ କରାଇବା ସଙ୍ଗେ ସଙ୍ଗେ ନିଜର ସାହିତ୍ୟିକ-କୃତିତ୍ୱ ପ୍ରଦର୍ଶନ କରି ପାରିଛନ୍ତି । ସେ ଗଙ୍ଗାଧରଙ୍କ ଭାବଧାରା ତଥା କାବ୍ୟ-ଲାଳିତ୍ୟକୁ ଇଂରାଜୀଭାଷାରେ ଯଥା ସମ୍ଭବ ଫୁଟାଇବାକୁ ଚେଷ୍ଟା କରିଛନ୍ତି । ଏଥିରେ ଗଙ୍ଗାଧରଙ୍କ ଏକ ସଂକ୍ଷିପ୍ତ ଜୀବନୀ ତଥା ପ୍ରତିକୃତି ମଧ୍ୟ ସଂଯୋଜିତ ହୋଇଛି ।'' (ଦୈନିକ 'ମାତୃଭୂମି'– ତା. ୨୦-୧-୧୯୬୭)

ପୁଣି ପ୍ରଥମ କରି ୧୯୪୦-୪୫ ମସିହା ଆଡ଼କୁ ଗଙ୍ଗାଧରଙ୍କ ସୁପ୍ରସିଦ୍ଧ କାବ୍ୟ- 'ତପସ୍ୱିନୀ'କୁ ଇଂରାଜୀରେ ଅନୁବାଦ କରିଛନ୍ତି। 'ତପସ୍ୱିନୀ' କାବ୍ୟକୁ ଇଂରାଜୀରେ ଅନୁବାଦ କରିବାରେ ଓଡ଼ିଶାରେ ପ୍ରଥମ ବ୍ୟକ୍ତି ହେଉଛନ୍ତି ଶଶିଭୂଷଣ ମିଶ୍ର । 'ତପସ୍ୱିନୀ' କାବ୍ୟ ଥରେ ନୁହେଁ, ଦୁଇଥର ନୁହେଁ, ଅନେକ ଥର ସେ ଅଧ୍ୟୟନ କରିଛନ୍ତି। ତାଙ୍କ କାବ୍ୟ ଅଧ୍ୟୟନ ସାଧାରଣ ଅଧ୍ୟୟନ ନୁହେଁ, ତାହା ହେଉଛି ମୁଗ୍ଧ-ଅଧ୍ୟୟନ, ଗୋଟିଏ ସତ୍ ଗବେଷକର ଉଚ୍ଚକୋଟୀର ତଥା ପରିପୂର୍ଣ୍ଣ ଅଧ୍ୟୟନ। ଯେଉଁ ଅଧ୍ୟୟନ କି ତାଙ୍କୁ ପରବର୍ତ୍ତୀ ସମୟରେ ଅନୁବାଦ ପାଇଁ ପ୍ରେରଣା ଯୋଗାଇଛି। ତାଙ୍କୁ ପ୍ରତିଷ୍ଠା ଆଣି ଦେଇଛି। 'ତପସ୍ୱିନୀ' କାବ୍ୟର ଇଂରାଜୀ ଅନୁବାଦ କିଭଳି ହୋଇଛି ବିଜ୍ଞ-ପାଠକ ଦେଖନ୍ତୁ। 'ତପସ୍ୱିନୀ'ର କେତେକ ଲୋକପ୍ରିୟ ପଦ ହେଉଛି :

(୧)

"କିଏ ଗୋ ତୁ ଜ୍ୟୋତିର୍ମୟୀ ଶୁଦ୍ଧ-ଶୁଭ୍ର-ବେଶା
ଇନ୍ଦ୍ରନୀଳ-ଦ୍ୟୁତି-ଜିତ-ମନୋହର-କେଶା ?

ତନୁକାନ୍ତି ଭେଦି ତୋର ଶୁଭ୍ର ସୂକ୍ଷ୍ମ ବାସ
ଆହ୍ଲାଦ ଦେଉଛି ହୃଦେ ହୋଇ ସୁପ୍ରକାଶ।

କୌମୁଦୀ କି ଘନ ହୋଇ ବହିଛୁ ଶରୀର?
କେଶ ଛଳେ ଚରଣେ ତୋ' ଲୋଟୁଛି ତିମିର।

ସୁବିରଳ ସମୁଜ୍ଜ୍ୱଳ ଚାରୁ ତାରା ଗ୍ରହ
ମଣ୍ଡିଛନ୍ତି ରତ୍ନ-ଭୂଷା-ରୂପେ ତୋ' ବିଗ୍ରହ।"

('ତପସ୍ୱିନୀ'– ଚତୁର୍ଥ ସଂ.-୧୯୪୦, ପ୍ରଥମସର୍ଗ, ପୃ.୧)

ଇଂରାଜୀ ଅନୁବାଦ

"Who art thou, radiant one, with white attire
And with deep blue hair that surpasses the Sapphire ?

Thy radiance pierces through the white gossamer
And gladdens the heart that it touches.

Art thou moon-beam solidified into a human form ?
Thy hair in the form of darkness, licks thy Feet

Fair and lustrous stars and planets
Adorn the Form like Jewelled-ornaments."

( 'The Banished' – 2006, Pg. -26 )

(୨)

"ମଙ୍ଗଳେ ଅଇଲା ଉଷା ବିକଚ ରାଜୀବ-ଦୃଶା
ଜାନକୀ-ଦର୍ଶନ-ତୃଷା ହୃଦୟେ ବହି,
କର ପଲ୍ଲବେ ନୀହାର- ମୁକ୍ତାଧରି ଉପହାର
ସତୀଙ୍କ ବାସ-ବାହାର-ପ୍ରାଙ୍ଗଣେ ରହି,
କଳକଣ୍ଠ-କଣ୍ଠେ କହିଲା,
"ଦରଶନ ଦିଅ ସତି, ରାତି ପାହିଲା ।"

('ତପସ୍ୱିନୀ' – ୧୯୪୦, ଚତୁର୍ଥ ସର୍ଗ, ପୃ.୫୨)

ଇଂରାଜୀ ଅନୁବାଦ :

"At a time auspicious came Dawn
With eyes of a lotus Full-blown.
She came with a thirst in her heart
To have a sight of Janaki apart,
offering pearls of dew in the hands of Foliage
She waited in the courtyard of sita's cottage,
And through the Cuckoo's Melodious Voice, said,
"Arise, Noble Queen and appear, for the night is ended."

( 'The Banished' – 2006, pg. -45 )

(୩)

"ସତୀ ପାଇ ଦୁଇ ପୁତ୍ର ରତନ
ପ୍ରାଣରୁ ଅଧିକ କରି ଯତନ
ଲାଳନେ ପାଳନେ ନିହିଲେ ମନ;
ଲାଗିଗଲା ଦୃଢ଼ ସ୍ନେହ ବନ୍ଧନ,
ଛାଡ଼ିଲେ ନାହିଁ ନିମିଷେ ପାଶ,
ମଣିଲେ ଜୀବନ-ଭାର ଉଶ୍ୱାସ ।"

('ତପସ୍ୱିନୀ' – ୧୯୪୦, ଦଶମସର୍ଗ, ପୃ.୧୪୪)

ଇଂରାଜୀ ଅନୁବାଦ :

"Considering her sons more precious than her life,
Sita utilized all her time in bringing them up.
Bestowing on them all her love and affection

she began to feel her life's burden lighten."

( 'The Banished' – 2006 *edn.*, pg. -95 )

(୪)

"ଧନ୍ୟ ସେହି ଭାଗ୍ୟବତୀ, ଫଳିଲେ ତା' ତପ-
ପାଦପେ ସଗର-ବଂଶ-ସିନ୍ଧୁ-ଶୀତାତପ ।"

('ତପସ୍ୱିନୀ' – ୧୯୪୦, ଏକାଦଶ ସର୍ଗ, ପୃ.୧୬୫)

ଇଂରାଜୀ ଅନୁବାଦ :

"Fortunate is she that in the tree of her penance
Grew, as Fruit, the Sea-moon of Sagara dynasty."

( 'The Banished' – 2006, Pg. -104 )

କେବଳ ଗଙ୍ଗାଧରଙ୍କ କାବ୍ୟ-ଚର୍ଚ୍ଚା ଦିଗରେ ଅଥବା ଅନୁବାଦ କାର୍ଯ୍ୟରେ ନୁହେଁ, ଗଙ୍ଗାଧରଙ୍କ ବିକ୍ଷିପ୍ତ ରଚନାବଳୀର ଅନୁସନ୍ଧାନ ଦିଗରେ ମଧ୍ୟ ତାଙ୍କର ଦୃଷ୍ଟିଭଙ୍ଗୀ ଏକାନ୍ତ ଚିର-ସ୍ମରଣୀୟ । କବି ଗଙ୍ଗାଧରଙ୍କ "ଭାରତୀ-ଭାବନା"ର ଦୁଇଟି ପଦକୁ ସର୍ବ ପ୍ରଥମେ ଶଶିଭୂଷଣ ହିଁ ଆବିଷ୍କାର କରିଥିଲେ । କିନ୍ତୁ "ଗଙ୍ଗାଧର ଗ୍ରନ୍ଥାବଳୀ" ସଂପାଦନା କଲାବେଳେ ସଂପାଦକଗଣ ଏହି ପଦ ଦୁଇଟିକୁ ଆଦୌ ଗ୍ରହଣ କରିନାହାନ୍ତି । ତେବେ ସେ ଦିଗରେ ଦୀର୍ଘ ଆଲୋଚନା ଓ ଉଚ୍ଚ ଗବେଷଣାର ଅପେକ୍ଷା ରଖେ । ଶଶିଭୂଷଣ ଏହି ପଦ ଦୁଇଟି ସନ୍ ୧୯୪୦ ମସିହା ଆଡ଼କୁ ବରପାଲିରୁ ସଂଗ୍ରହ କରିଥିଲେ ବୋଲି ତାଙ୍କ ଲିଖିତ ଏକ ନୋଟ୍‌ବୁକ୍‌ରେ ଉଲ୍ଲେଖ କରିଛନ୍ତି ।

ତା ୪-୪-୧୯୨୪ ମସିହା, ଚୈତ୍ର ଅମାବାସ୍ୟା ଦିନ କବି ଗଙ୍ଗାଧରଙ୍କର ମହାପ୍ରୟାଣ ହୁଏ । ଏହା ଓଡ଼ିଆ ସାହିତ୍ୟପାଇଁ ଯେପରି ଭୟଙ୍କର କ୍ଷତି, ସେହିପରି ଶଶିଭୂଷଣଙ୍କ କବି ମାନସରେ ମଧ୍ୟ ଦାରୁଣ ଆଘାତ ସୃଷ୍ଟି କରିଥିଲା । କବିପୁତ୍ର ଭଗବାନ ମେହେରଙ୍କୁ ଖଣ୍ଡିଏ ସାନ୍ତ୍ୱନାମୂଳକ ପତ୍ର ଲେଖି ଶଶିଭୂଷଣ ନିଜ ହୃଦୟର ଭାବଧାରା ବ୍ୟକ୍ତ କରିଥିଲେ । ତା ୮।୪।୧୯୨୪ର ପତ୍ରରେ ଯୁବକ ଶଶିଭୂଷଣ ଲେଖିଥିଲେ :

ଓଁ ତତ୍ସତ୍

ବରଗଡ଼
ତା. ୮।୪।୨୪

ପ୍ରିୟ ଭଗବାନ ବାବୁ,

କବିବରଙ୍କ ସ୍ୱର୍ଗାରୋହଣ ବାର୍ତ୍ତା ଜନୈକ ବ୍ୟକ୍ତିଠାରୁ ଶନିବାର ଦିନ କଚେରୀରୁ ଶୁଣିଥିଲେ ହେଁ ବେଙ୍କ୍ ମେନେଜର ଅନନ୍ତରାମ ବାବୁ ଶୁକ୍ରବାର ଦିନ ଭଲଥିବାର ଶୁଣି-ଆସିଥିବାରୁ ସେ ଦୁଃସମ୍ବାଦରେ ଆସ୍ଥା ସ୍ଥାପନ କରିନଥିଲୁଁ । ରବିବାର ଦିନ ସବ୍‌ଡିଭିଜନେଲ୍

ଜେଲର୍ ସାହେବ ବରପାଲି ଯିବାରୁ ତାଙ୍କର ପ୍ରତ୍ୟାଗମନକୁ ଚାକି ରହି ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଉଁ ଯେପରି ସମ୍ବାଦ ମିଛ ହୁଏ। ମାତ୍ର ଉତ୍କଳର ଦୁର୍ଭାଗ୍ୟକୁ ସବ୍‌ଡ଼ିଭିଜନେଲ୍ ସାହେବ ଯାହା କହିଲେ ସେଥିରେ ଆମ୍ଭମାନଙ୍କର ଶରୀର ଜଡ଼ୀଭୂତ ହୋଇଗଲା। କବିବର ଉତ୍କଳ ସାହିତ୍ୟ ଗୃହର ପ୍ରଧାନ ସ୍ତମ୍ଭ। ଉତ୍କଳ ସାହିତ୍ୟ କମଳବନର ମିହିର, ଉତ୍କଳ-ସାହିତ୍ୟାକାଶର ରାକାଶଶଧର ଥିଲେ। ତାଙ୍କ ଅଭାବରେ ଉତ୍କଳ ଓ ଉତ୍କଳ ସାହିତ୍ୟ ପ୍ରଧାନ ରତ୍ନ ହରାଇଲା ଏବଂ ସମ୍ବଲପୁର ଜନନୀ ଯାର ଯୋଗୁଁ ଅନ୍ୟାନ୍ୟ ଲୋକମାନଙ୍କ ଅପେକ୍ଷା ଉଚ୍ଚାସନ ପାଇଥିଲେ, ସେ ଆଜି ମାତାଙ୍କୁ ନିରାଶ୍ରୟା କରି ଚାଲିଗଲେ, ସମ୍ବଲପୁର ଜନନୀର ନୟନମଣି ହଜିଗଲା। ଆମ୍ଭେମାନେ ଉତ୍କଳ ସାହିତ୍ୟ କ୍ଷେତ୍ରରେ ଯୁଝିବା ପାଇଁ ଆମ୍ଭର ପ୍ରଧାନ ସେନାପତିଙ୍କୁ ହରାଇଲୁଁ। ଉତ୍କଳମାତା ତାଙ୍କର ଭଣ୍ଡାର ରକ୍ଷକକୁ ହରାଇ ଆଜି ହତାଶ ହୋଇଅଛନ୍ତି। ବିଧି ଉତ୍କଳପ୍ରତି ପ୍ରତିକୂଳ ଅଛି–ତାହାର ସୁସନ୍ତାନମାନଙ୍କୁ ଏପରି ଅକାଳରେ ଛଡ଼ାଇ ନେବାର ଯେପରି ଗତି ପଡ଼ିଯାଇଛି। ବିଧିର ବିଧିକି ଲଂଘିବା କାହାର ସାଧ ନାହିଁ। ଏଣୁ ଶୋକ ପରିହାର କରି କବିବରଙ୍କ ଉପଯୁକ୍ତ ପୁତ୍ରର କାର୍ଯ୍ୟ-କର, ଯେପରି କବିବର ଅନନ୍ତ ଧାମରେ ଥାଇ ଶାନ୍ତି ଲାଭ କରିବେ। ଉତ୍କଳକୁ କନ୍ଦାଇ ଯିବାକୁ ସକ୍ଷମ ଏପରି ପିତା ପାଇଥିଲେ–ଏବେ ପୁତ୍ରର ଉପଯୁକ୍ତ କାର୍ଯ୍ୟକର।

ରବିବାର ଦିନ ସନ୍ଧ୍ୟାରେ ସ୍କୁଲ ସଂଲଗ୍ନ ପ୍ରଶସ୍ତ ପ୍ରାଙ୍ଗଣରେ ଗୋଟିଏ ବିରାଟ୍ ସଭା ଆହ୍ୱାନ କରାଯାଇ ସ୍ୱର୍ଗତ ଆତ୍ମାର ଶାନ୍ତିବିଧାନ ଓ ଶୋକ ସନ୍ତପ୍ତ ପରିବାରଙ୍କ ପ୍ରତି ସହାନୁଭୂତି ପ୍ରକାଶ ପାଇଁ ବିଶ୍ୱ ସମ୍ରାଟ୍‌ଙ୍କଠାରେ ପ୍ରାର୍ଥନା କରାଯାଇ ଏହି ପ୍ରସ୍ତାବ ହେଲା ଯେ, ଏ ସଭା ତଥା ବରଗଡ଼ ଜନସାଧାରଣଙ୍କ ପକ୍ଷରୁ ସ୍ୱର୍ଗତ କବିବରଙ୍କ ଶୋକ ସନ୍ତପ୍ତ ପରିବାର–ବର୍ଗଙ୍କଠାକୁ ତାଙ୍କର ଏହି ଶୋକ ସମୟରେ ସହାନୁଭୂତିଜ୍ଞାପନ ଏହି ପତ୍ର ପଠାଯାଉ । ଏଣୁ ଏ ପତ୍ର-ପ୍ରକାଶ ଥାଉକି ଉକ୍ତ ସଭାରେ ଯେଉଁ ପଦ୍ୟଟି ପଠିତ ହୋଇଥିଲା ତାହା ମଧ୍ୟ ସଭାପତିଙ୍କ ଆଦେଶମତେ ପଠାଗଲା । ଇତି ।

ଶଶିଭୂଷଣ ମିଶ୍ର
ସ୍କୁଲ ଶିକ୍ଷକ, ହାଇସ୍କୁଲ
(ସ୍କୁଲ ଓ ବରଗଡ଼ ଜନସାଧାରଣଙ୍କ ତରଫରୁ)
('ପିତୃ ପ୍ରସଙ୍ଗ' – ୧୯୭୭, ପୃ. ୧୨୧-୧୨୨)

## ଶଶିଭୂଷଣଙ୍କ ସୃଷ୍ଟି ପ୍ରତ୍ୟୟ

ଇଂରାଜୀରେ ଗୋଟିଏ ସୂକ୍ତି ଅଛି– "ମଣିଷ ତାର ବାଣୀ ଯୋଗରେ ପରିଚିତ ହୁଏ ।" ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଶଶିଭୂଷଣଙ୍କ ଏକନିଷ୍ଠ ତପସ୍ୟା ଓ ସାଧନା ଏକାନ୍ତ ସ୍ମରଣଯୋଗ୍ୟ। ଜଣେ କବି, ପ୍ରାବନ୍ଧିକ, ଗାଳ୍ପିକ, ଔପନ୍ୟାସିକ ଓ ସଫଳ ଅନୁବାଦକ

ଭାବରେ ତାଙ୍କର ସ୍ୱତନ୍ତ୍ର ପରିଚୟ ଦେଇଛନ୍ତି । ତାଙ୍କର ରଚନାବଳୀ ଗୁଡ଼ିକ ଦୀର୍ଘଦିନ ଧରି ପାଣ୍ଡୁଲିପି ଅବସ୍ଥାରେ ନିଜ ଗୃହରେ ପଡ଼ି ରହୁଥିଲେ ମଧ୍ୟ ତାକୁ ପ୍ରକାଶ କରିବା ପାଇଁ କେବେ କାହାର କରୁଣାପ୍ରାର୍ଥୀ ହୋଇ ନଥିଲେ; କିମ୍ବା କାହାକୁ ବାଧ୍ୟ କରୁନଥିଲେ । ଫଳରେ ଅଧିକାଂଶ ଉପାଦେୟ ଲେଖା ପାଣ୍ଡୁଲିପି ଆକାରରେ ଘରେ ପଡ଼ିରହି ଶେଷରେ କେତେକ ନଷ୍ଟ ହୋଇଯାଇଛି । ଶଶିଭୂଷଣଙ୍କ ସମଗ୍ର ରଚନାବଳୀକୁ ଗବେଷଣା ଦୃଷ୍ଟିରୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇପାରେ । ଯଥା :

(୧) ଜୀବଦ୍ଦଶାରେ ପ୍ରକାଶିତ ରଚନାବଳୀ ।

(୨) ମୃତ୍ୟୁପରେ ପ୍ରକାଶିତ ରଚନାବଳୀ ।

(୩) ଅପ୍ରକାଶିତ ରଚନାବଳୀ ।

ତାଙ୍କ ଜୀବଦ୍ଦଶାରେ ଯେଉଁ କେତୋଟି ଲେଖା ପ୍ରକାଶିତ ହୋଇଥିଲା, ସେଗୁଡ଼ିକ :

(୧) ବାଣୀ ଆବାହନ (କବିତା) - ନବଯୁଗ ୧ମ ଭାଗ, ୨ୟ ସଂଖ୍ୟା ଜ୍ୟେଷ୍ଠ ୧୩୩୫ ମଇ, ୧୯୨୮ ।

(୨) **ହୀରାକୁଦ ବନ୍ଧ** (ପ୍ରବନ୍ଧ)–(୧) ହୀରାଖଣ୍ଡ ସମାଚାର, ପ୍ରଥମବର୍ଷ, ଷଷ୍ଠ ସଂଖ୍ୟା ତା ୧୭-୯-୧୯୪୬, ମଙ୍ଗଳବାର ।

(୩) **ହୀରାକୁଦ ବନ୍ଧ** (ପ୍ରବନ୍ଧ)– (୨) ହୀରାଖଣ୍ଡ ସମାଚାର, ପ୍ରଥମବର୍ଷ, ସପ୍ତମ ସଂଖ୍ୟା ତା ୨୪-୯-୧୯୪୬ ମଙ୍ଗଳବାର ।

(୪) କାଁ କରମା (ସମ୍ବଲପୁରୀ କବିତା) – ହୀରାଖଣ୍ଡ ସମାଚାର, ପ୍ରଥମବର୍ଷ, ବିଂଶ ସଂଖ୍ୟା, ତା ୨୪-୧୨-୧୯୪୬, ମଙ୍ଗଳବାର ।

(୫) ଚାଷର ବଡ଼ାଇ (କବିତା)– ୧୯୫୪ ମସିହାରେ ଶ୍ରୀ କେଶବ ଚନ୍ଦ୍ର ମେହେରଙ୍କ ଦ୍ୱାରା ସଂକଳିତ "ଶିକ୍ଷା ସଙ୍ଗୀତ" ପୁସ୍ତକରେ ସନ୍ନିବେଶିତ । (ପୃ. ୧୬)

(୬) ଦେବଶିଶୁ–ଦର୍ଶନେ (କବିତା)– ୧୯୬୨ ମସିହାରେ କବି ଖଗେଶ୍ୱର ଶେଠଙ୍କ ଦ୍ୱାରା ସଂପାଦିତ ଓ "ଖଗେଶ୍ୱର-ସାହିତ୍ୟ-ସମିତି" ଆନୁକୂଲ୍ୟରେ ପ୍ରକାଶିତ ସ୍ମରଣିକା "ପୁଷ୍ପାଞ୍ଜଳି"ରେ ସଂକଳିତ ।

ଏହା ତାଙ୍କର ପ୍ରକାଶିତ ସଂପୂର୍ଣ୍ଣ ତାଲିକା ନୁହେଁ । ଏହା ବାହାରେ ତାଙ୍କର ଆହୁରି କେତେକ ରଚନା ପ୍ରକାଶିତ ହୋଇଥିବାର ସମ୍ଭାବନା ରହିଛି । ସେଗୁଡ଼ିକର ଅନୁସନ୍ଧାନ ପରବର୍ତ୍ତୀ ଗବେଷକମାନଙ୍କ ପାଇଁ । ତାଙ୍କର ଜୀବଦ୍ଦଶାରେ ପ୍ରକାଶିତ କେତେକ ପୁସ୍ତକର ସୂଚନା ଓ ସେ ସଂପର୍କରେ ଏଠାରେ ତଥ୍ୟ ପ୍ରଦାନ କରାଗଲା । ଯଥା :

(୧) **ଶ୍ରୀ ଗାନ୍ଧିଗୀତା**– ସାହିତ୍ୟିକ ଶ୍ରୀ ଦୟାଲାଲ ଯୋଷୀଙ୍କ ବରଗଡ଼ସ୍ଥିତ "ଶାନ୍ତି ପ୍ରିଣ୍ଟିଂ ପ୍ରେସ୍" ରୁ ୧୯୫୩ ମସିହାରେ ଶଶିଭୂଷଣଙ୍କ "ଶ୍ରୀ ଗାନ୍ଧିଗୀତା" ଶୀର୍ଷକ ଖଣ୍ଡିଏ ଉପାଦେୟ କ୍ଷୁଦ୍ର କାବ୍ୟ ପ୍ରକାଶିତ ହୁଏ । ଏହି କାବ୍ୟ ଖଣ୍ଡିକ ନବାକ୍ଷରୀ ବୃତ୍ତରେ ରଚିତ ।

ଏହାର ବିଷୟ ବସ୍ତୁ ହେଉଛି ମହାନ୍ ଆତ୍ମାରେ ଅହିଂସାନୀତିର ପ୍ରଚାର ଓ ପ୍ରସାର । ଏହି କାବ୍ୟ ଖଣ୍ଡିକ ସେତେବେଳେ ବିଶେଷ ଲୋକପ୍ରିୟ ହୋଇପାରିଥିଲା । "ଶ୍ରୀଗାନ୍ଧିଗୀତା'' ପୁସ୍ତକର ଶେଷ ପୃଷ୍ଠାରେ ସଂସ୍କୃତରେ "ଦଶାବତାର ସ୍ତୋତ୍ରଂ" ଲେଖାଯାଇଛି । ଯେଉଁଥିରେ କି ଜାତିର ପିତା ମହାତ୍ମାଗାନ୍ଧିଙ୍କ ବିଭିନ୍ନ ବିଷୟ, ରଚନାତ୍ମକ କାର୍ଯ୍ୟକଳାପକୁ ନେଇ ବର୍ଣ୍ଣିତ । ସମଗ୍ର କାବ୍ୟଖଣ୍ଡିକ ସୁଖପାଠ୍ୟ ଅଟେ । ଏହି ପୁସ୍ତକଟି ସେତେବେଳେ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ଉତ୍ସର୍ଗ କରାଯାଇଥିଲା । ଉତ୍ସର୍ଗ ପତ୍ରରେ କବି ଶଶିଭୂଷଣ ଲେଖିଥିଲେ :

**ଉତ୍ସର୍ଗ ପତ୍ର**

ଆଧୁନିକ ବୃହତ୍ତର ଓଡ଼ିଶାର ପ୍ରଧାନ ନିର୍ମାତା, ସ୍ୱାଧୀନ ଭାରତରେ ଓଡ଼ିଶା ରାଷ୍ଟ୍ରର ପ୍ରଥମ ମୁଖ୍ୟମନ୍ତ୍ରୀ, ଭାରତ ସରକାରଙ୍କ ଭୂତପୂର୍ବ ବାଣିଜ୍ୟ ଶିଳ୍ପ ମନ୍ତ୍ରୀ, ଉପସ୍ଥିତ ଭାରତ ପାର୍ଲିଆମେଣ୍ଟ କଂଗ୍ରେସ୍ ପାର୍ଟିର ଜେନେରେଲ୍ ସେକ୍ରେଟେରୀ ଡକ୍ଟର୍ ହରେକୃଷ୍ଣ ମହତାବଙ୍କ କର କମଳ ଯୁଗଳରେ ବିନୀତ ଲେଖକ ଏହି 'ଶ୍ରୀ ଗାନ୍ଧିଗୀତା'କୁ ଭକ୍ତ୍ୟୁପହାର ରୂପେ ଅର୍ପଣ କରୁଛି । ଏହା ସାଦର ଗୃହୀତ ହେଲେ ଲେଖକର ଶ୍ରମ ସଫଳ ହେବ ।"

ପ୍ରାର୍ଥୀ
ବିନୀତ ଲେଖକ ।

"ଶ୍ରୀ ଗାନ୍ଧି ଗୀତା" ପୁସ୍ତକର ପ୍ରଥମ ଅଧ୍ୟାୟରେ ଶଶିଭୂଷଣ ଲେଖିଛନ୍ତି :

"ଶୁଣ ସୁଜନ କରି ଲୟ । ଏ ଗାନ୍ଧିଗୀତା ସୁଧାମୟ । ୧ ।
ଶ୍ରବଣେ ଭୀରୁତା ବିନାଶ । ପଠନେ ଅହିଂସା ପ୍ରକାଶ । ୨ ।
ମନନେ ସତ୍ୟ ଧନଲାଭ । ଏ ଗୀତା ମାୟା ନଦୀ ନାବ । ୩ ।
ଅବନୀ ଖଣ୍ଡେ ଜମ୍ବୁଦ୍ୱୀପ । ଦେବେ ଯେସନ ପାର୍ବତୀପ । ୪ ।
ଜମ୍ବୁଦ୍ୱୀପରେ ହିନ୍ଦୁସ୍ଥାନ । ଶଙ୍କର ଶିରେ ଚନ୍ଦ୍ରମାନ । ୫ ।
ଅମଦାବାଦର ଆଶ୍ରମ । ଚନ୍ଦ୍ର ମଣ୍ଡଳେ ସୁଧାସମ । ୬ ।
ସାବରମତି ସ୍ରୋତବର । ପୂତ ନିର୍ମଳ ମନୋହର । ୭ ।
ତା'କୂଳେ ବିରାଜେ ଆଶ୍ରମ । ସ୍ୱଚ୍ଛ ମୁନୀନ୍ଦ୍ର ମନ ସମ । ୮ ।
ଯେ ଅନ୍ତେବାସୀ ନରନାରୀ । ନିରହଙ୍କାର ସଦାଚାରୀ । ୯ ।
ଚଞ୍ଚଳ କର୍ମ ପରାୟଣ । ସେବା ହିଁ ପରମ ଧରମ । ୧୦ ।
ନାହିଁ ବୟସ ବର୍ଣ୍ଣଭେଦ । ବାପୁ ବଚନ ତାଙ୍କୁ ବେଦ । ୧୧ ।
ସେ ପୂତ ପୀଠ ମୂଳ ନେତା । ମୋହନ ଦାସ ଶୁଦ୍ଧଚେତା । ୧୨ ।
ପ୍ରଶାନ୍ତ ବପୁ ଦୀର୍ଘାକାର । ଉନ୍ନତ ନାସା ଖଣ୍ଡାଧାର । ୧୩ ।
ଆଜାନୁ ଲମ୍ବ ବାହୁ ବେନି । ଭୋଗି ଭୋଗର ସାମ୍ୟଘେନି । ୧୪ ।

ଶ୍ରବଣ ନୟନ ବିଶାଳ । ସ୍କନ୍ଧ ବୃଷଭ ସ୍କନ୍ଧ ଭାଳ । ୧୫ ।
ପୟର କିବା ପାଣିତଳ । ବର୍ଣ୍ଣେ ହାରିବ ପଦ୍ମଦଳ । ୧୬ ।
ସସ୍ମିତ ମଧୁର ବଚନ । ହେଲେ କିଣଇ ଜନମନ । ୧୭ ।
ଉଛୁଳେ ଦେହୁଁ ଦିବ୍ୟ ଜ୍ୟୋତି । ଜନତା ରହେ ମୁଖ ପୋତି । ୧୮ ।
ଶ୍ରୀକରେ ସୂତ୍ର କରତନ । ତାଙ୍କର ପ୍ରଧାନ କରମ । ୧୯ ।
ତାଙ୍କର ସନ୍ଧ୍ୟା ଆରାଧନା । ନାହିଁ ନ ଥିବ ତା ତୁଳନା । ୨୦ ।
ପଶିଲେ ଶ୍ରବଣେ ସେ ବାଣି । ବହଇ ପ୍ରେମ ଯେ ଉଜାଣି । ୨୧ ।
ଲଜ୍ଜା ଗରବ ଯାଏ ଭାସି । ମୂକ ବାଚାଳ ହୁଏ ଆସି । ୨୨ ।
ଯାଏ ଆପଣାର ପରଜ୍ଞାନ । ଦେଶ ବିଦେଶ ଧନ ମାନ । ୨୩ ।
ସକଳ ନୟନ ମୋହନେ । ଶ୍ରବଣେ ମୋହନ ବଚନେ । ୨୪ ।
ଉଭେଇ ଯାଏ ମର୍ତ୍ତ୍ୟଜ୍ଞାନ । ପ୍ରତୀତ ହୁଏ ଦେବସ୍ଥାନ । ୨୫ ।
ଅକ୍ଷମ କବିର କବିତ୍ୱ । ମସୀରେ ଚିତ୍ରିବ ସେ ଚିତ୍ର । ୨୬ ।
କଳ୍ପି ବସିଲେ କଳ୍ପ କଳ୍ପ । ଶିଳ୍ପୀର ଜ୍ଞାନ ହେବ ଅଳ୍ପ । ୨୭ ।
ଜ୍ଞାନ-ଗରବି ଜ୍ଞାନ ବଣା । ଦାମ୍ଭିକ ନେତ୍ର ହୁଏ କଣା । ୨୮ ।
ଭାବ ରାଜ୍ୟର ସେ ସମ୍ପତ୍ତି । ଭାବୁକ ଭାଗ୍ୟେ ପରାପତି । ୨୯ ।
ଅନ୍ୟଥା ପ୍ରଚେଷ୍ଟା ବିଫଳ । ଭଣଇ ଶଶି ନୁହେ ଛଳ । ୩୦ ।

(ଶ୍ରୀ ଗାନ୍ଧିଗୀତା–୧୯୫୩, ପୃ. ୫–୬)

(୧) ଶଶିଭୂଷଣଙ୍କ ଏହି "ଶ୍ରୀ ଗାନ୍ଧି ଗୀତା" ପୁସ୍ତକରେ ଆମେ ସୂକ୍ଷ୍ମ ଭାବରେ ଦେଖିବାକୁ ପାଉଁ ତାଙ୍କର ସରଳ ଅଥଚ ଶୁଦ୍ଧ-ନୀତି ପ୍ରାଣତା, କଳ୍ପନା-ବିଳାସ ଏବଂ କବି ଚିତ୍ତର ଆନନ୍ଦ ଓ ମୁଗ୍ଧବୋଧ । ତାହା ତାଙ୍କର ସମଗ୍ର ପଦ୍ୟରେ ଏହିସବୁ ଜିନିଷ ସଂପୂର୍ଣ୍ଣ ରୂପରେ ବିଦ୍ୟମାନ ରହିଛି । ତେଣୁ ଆମକୁ ମନେ ରଖିବାକୁ ହେବ ଯେ, ତାଙ୍କ କାବ୍ୟ ଦୃଷ୍ଟି-ବାକ୍ୟ କଳ୍ପନା ମୌଳିକ ବିଚାର ଧାରା ଦ୍ୱାରା ସମୃଦ୍ଧ ଓ ପରିପୁଷ୍ଟ । ସେଥିରେ ରହିଛି କବିର ନୂତନ ଅନ୍ତର୍ଦୃଷ୍ଟି ।

**(୨) ରଖ୍, ମାଁ ପଲ୍‌ସା ଗୁଚ୍ଛା (୧୯୫୯) :**

ଏହି ପୁସ୍ତକ ମଧ୍ୟ ବରଗଡ଼ ସ୍ଥିତ "ଶାନ୍ତି ପ୍ରିଣ୍ଟିଂ ପ୍ରେସ୍"ରେ ୧୯୫୯ ମସିହାରେ ମୁଦ୍ରିତ । ଏହି ପୁସ୍ତକର ବିଷୟ ବସ୍ତୁ ଏହି ଯେ, ଶାନ୍ତି ପ୍ରତିଷ୍ଠା ପାଇଁ ଶ୍ରୀକୃଷ୍ଣଙ୍କର ଦୁର୍ଯ୍ୟୋଧନ ସହିତ କଥୋପକଥନ । ଅଧ୍ୟାପକ ଡ. କୁଂଜବିହାରୀ ତ୍ରିପାଠୀଙ୍କ ମୂଲ୍ୟବାନ୍ ଅଭିମତ ଏ ପୁସ୍ତକରେ ସଂଯୋଜିତ । ବିଶୁଦ୍ଧ ସମ୍ବଲପୁରୀ ଭାଷାରେ ଲିଖିତ ଖଣ୍ଡେ କ୍ଷୁଦ୍ର କାବ୍ୟ ।

**(୩) ଚାତୁର୍ଯ୍ୟଗଳ୍ପ ସାଗର (?) :**

ଏହି ପୁସ୍ତକଟି ସମ୍ଭବତଃ ୧୯୫୦ ରୁ ୧୯୭୦ ମସିହା ମଧ୍ୟରେ ପ୍ରକାଶିତ ।

ମଲାଟ ପୃଷ୍ଠା ନ ଥିବାରୁ ପୁସ୍ତକର ସଠିକ୍ ପ୍ରକାଶନ କାଳ ସଂପର୍କରେ କୁହାଯାଇପାରିବ ନାହିଁ । ଏଥିରେ ସର୍ବମୋଟ ୭୫ଟି କ୍ଷୁଦ୍ରଗଳ୍ପ ସ୍ଥାନ ପାଇଛି । ପ୍ରାୟତଃ ସମସ୍ତ ଗଳ୍ପରେ ହାସ୍ୟରସର ମଧୁର ପରିବେଷଣ କରାଯାଇଛି । "ଚାତୁର୍ଯ୍ୟ ଗଳ୍ପ ସାଗର" ପୁସ୍ତକରେ ସ୍ଥାନିତ ହୋଇଥିବା ଛୋଟ ଛୋଟ ଗପସବୁର ପରିବେଷଣରେ ଗାଳ୍ପିକ ଶଶିଭୂଷଣଙ୍କ ସୂକ୍ଷ୍ମ-ମନସ୍ତାତ୍ତ୍ୱିକ ଅବବୋଧ ଏକାନ୍ତ ଲକ୍ଷ୍ୟଣୀୟ ।

**(୪) ସଂକ୍ଷିପ୍ତ ମହାଭାରତ କଥା (୧୯୫୩ ?) :**

ଶଶିଭୂଷଣ ବରପାଲି ମି.ଇ.ସ୍କୁଲରେ ହେଡ୍‌ମାଷ୍ଟର ଥିବା ସମୟରେ ଏହି କ୍ଷୁଦ୍ର ପୁସ୍ତିକାଟି (୧୯୧୭) ଲେଖିଥିଲେ । ଏହା ୧୯୫୩ ମସିହାରେ ପ୍ରକାଶିତ ବୋଲି ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ଲିଖିତ ନୋଟ୍‌ରୁ ଜଣାପଡ଼େ । ଗଙ୍ଗାଧର ମେହେରଙ୍କ "ଭାରତୀ-ଭାବନା" ପରି ଦ୍ୱି-ଅର୍ଥବୋଧକ ଏକ କ୍ଷୁଦ୍ର କାବ୍ୟ ।

**(୫) ଗାଉଁଲି ଗପ : (୧୯୬୦) :**

୧୯୬୦ ମସିହାରେ କଟକ ଟ୍ରେଡିଂ କମ୍ପାନୀଙ୍କ ସୌଜନ୍ୟରୁ ଏହି ଗଳ୍ପପୁସ୍ତକଟି ପ୍ରକାଶିତ । ଏଥିରେ ଛଅଗୋଟି କ୍ଷୁଦ୍ରଗଳ୍ପ ସ୍ଥାନ ପାଇଛି । ଗଳ୍ପଗୁଡ଼ିକ ବହୁ ଚମତ୍କାର ଓ ପ୍ରତ୍ୟେକ ଗଳ୍ପରେ ଗାଳ୍ପିକଙ୍କ ମୌଳିକତା ଫୁଟି ଉଠିଛି ।

**(୬) ଅଦ୍ଭୁତ ହତ୍ୟାକାରୀ (୧୯୬୦) :**

ଏହି ପୁସ୍ତକର ପ୍ରକାଶକ ମଧ୍ୟ କଟକ ଟ୍ରେଡିଂ କମ୍ପାନୀ । ଏହା ଏକ ସମାଜ ସଂସ୍କାର ମୂଳକ ଉପନ୍ୟାସ ।

**(୭) ଆଗ ଓଡ଼ିଶା ଏବ ଓଡ଼ିଶା ଓ କାଲି ଓଡ଼ିଶା (୧୯୬୦) :**

ଏହି କବିତା ପୁସ୍ତକଟି ୧୯୬୦ ମସିହାରେ ଶ୍ରୀ ଦୟାଲାଲ୍ ଯୋଶୀଙ୍କ ବରଗଡ଼ ସ୍ଥିତ "ଶାନ୍ତି ପ୍ରିଣ୍ଟିଂ ପ୍ରେସ୍"ରେ ମୁଦ୍ରିତ ଓ ଏହାର ପ୍ରକାଶକ ଥିଲେ କବିପୁତ୍ର –ଶ୍ରୀ ଦୁର୍ଗାପ୍ରସାଦ ମିଶ୍ର । ଏହି ପୁସ୍ତକରେ ସେ ଓଡ଼ିଶାର ଗୌରବମୟ ଅତୀତ ଇତିହାସ ବର୍ଣ୍ଣନା କରିଛନ୍ତି । ଓଡ଼ିଶାର ବହୁମୁଖୀ ପ୍ରତିଭାମାନଙ୍କ କୀର୍ତ୍ତି ଓ ଗୌରବରେ ତାଂକ ଲେଖନୀ ମୁଖରିତ ହୋଇ-ଉଠିଛି । ଏହି କବିତା ଗ୍ରନ୍ଥରେ ଠାଏ ଲେଖିଛନ୍ତି :

"ଆସ ଆସ ଭାଇ ଭଉଣୀ
ଶୁଣ ହେ ଡେରି କାନ ।
ଜନମ ଭୂଇଁ ଏ ଓଡ଼ିଶା
କେବେ କି ଥିଲା ସାନ ।।

× × ×

ଯାହାର ପୁଅ କୃଷ୍ଣ ମିଶ୍ର
ଦେଖାଇ ପଣ୍ଡିତାଇ ।

କାଶୀ ପଣ୍ଡିତମାନଙ୍କର

ବୁଦ୍ଧି ଦେଲା ହଜାଇ ।।" (ପୃ. ୧)

ଏହାର ଅର୍ଥ ଏହି ଯେ, ପଣ୍ଡିତ କୃଷ୍ଣ ମିଶ୍ର । ସମ୍ବଲପୁର ସହରରେ ତାଙ୍କର ଘର । ସଂସ୍କୃତ ସାହିତ୍ୟ ଓ ଶାସ୍ତ୍ର ଚର୍ଚ୍ଚା ଦିଗରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ଠାଏ ଉଲ୍ଲେଖ ଅଛି : "ଆଲୋ ଲୋ ଜାନକୀ ନାନୀ ରାଜ୍ୟବାର୍ତ୍ତା କଥା କହ

ଗଲା ଶାରୀର କି ବାର୍ତ୍ତା ଆଖୁ ପେଡ଼ା ଗଲା ପରା ।।"

ଶ୍ରୀ ମିଶ୍ର ଏହାର ଅର୍ଥ କରି କାଶୀ ପଣ୍ଡିତମାନଙ୍କୁ ପରାସ୍ତ କରିଥିଲେ । ଏଭଳି ବହୁ ବିଷୟରେ କାବ୍ୟଖଣ୍ଡିକ ପରିପୂର୍ଣ୍ଣ ।

**(୮) ମାଁ, କହ ଗୁଟେ କଥାନି (୧୯୬୪) :**

ଭିଖାରୀକୁ ଯଥାଶକ୍ତି ସମ୍ମାନ ଦେବା ନୀତି ଅନୁସରଣ କରିବାପାଇଁ ସମଗ୍ର ମାନବ ଜାତିକୁ ଲେଖକଙ୍କର ବହୁ ଗୁରୁତ୍ୱପୂର୍ଣ୍ଣ ନମ୍ର ନିବେଦନ । ଏହି କାବ୍ୟର ପ୍ରତ୍ୟେକ ପଦ ଅତି ଲୋକ-ଲୋଭନୀୟ ବିଷୟ । ଏହାକୁ ହିଁ ବାସ୍ତବରେ "କ୍ଲାସିକ୍" ସାହିତ୍ୟ କୁହାଯିବ । ସମ୍ବଲପୁରୀ ଭାଷା ଓ ସାହିତ୍ୟର ଲେଖକ ମାନଙ୍କ ପାଇଁ ଏହା ଅମୃତତୁଲ୍ୟ ଅଟେ । ଏହି କାବ୍ୟ ପାଠକରି ସାହିତ୍ୟପ୍ରାଣ କବି ଖଗେଶ୍ୱର ଶେଠ ଲେଖିଥିଲେ :

"ମାଁ, କହ ଗୁଟେ କଥାନି" ଲେଖାଟି ଆମୂଳାନ୍ତ ମୁଁ ପାଠ କରିଛିଁ । ଏଥିରେ ସମ୍ବଲପୁରୀ ଭାଷା ଓ ଆଞ୍ଚଳିକ (ସମ୍ବଲପୁରୀ) କବିତାର ଶୈଳୀ ତଥା ବୈଶିଷ୍ଟ୍ୟ ଦୃଷ୍ଟିରୁ ସ୍ଥାନେ ସ୍ଥାନେ ଯେଉଁ ତ୍ରୁଟି ଗୁଡ଼ିକ ପରିଲକ୍ଷିତ ହୁଏ–ସେସବୁ ସେଭଳି ଧର୍ତ୍ତବ୍ୟ ବିବେଚିତ ହେଉନାହିଁ–ଅନ୍ତତଃ ଗୁଣ ମୁଗ୍ଧ ଓ ଗୁଣ ଲୁବ୍ଧ ବ୍ୟକ୍ତି ବିଶେଷଙ୍କ ମତରେ ।

ଏକ ବର୍ଣ୍ଣାନ୍ତ କବିତା ସୋପାନ୍ତ୍ୟ ମିଳନ ଅକ୍ଷୁଣ୍ଣ ନିୟମରେ ସମ୍ବଲପୁରୀ ଭାଷା ସାହିତ୍ୟରେ ଉପସ୍ଥାପିତ କରିବା ସହଜ ସାଧ ନୁହେଁ – ଏହା କବି ଲେଖକ ମାତ୍ରେ ନିଶ୍ଚୟ ଅନୁଭବ କରିବେ ବୋଲି ମୋର ସରଳ ବିଶ୍ୱାସ ।

ଲେଖାର ଉପଜୀବ୍ୟ ବିଷୟଟି ପ୍ରାଚୀନ ଭାରତର ସାଂସ୍କୃତିକତା ରକ୍ଷା ଦୃଷ୍ଟିରୁ ଉପାଦେୟ ହୋଇଅଛି ।

ଅନାହାରୀ ଭିକ୍ଷୁ ଭିକ୍ଷାଲବ୍ଧାନ୍ନ ପାତ୍ରକୁ ଆଉ ଗୋଟାଏ ବୁଭୁକ୍ଷୁର ହସ୍ତରେ ହସି ହସି ଯଦି ଅର୍ପଣ କରେ ତେବେ ସେ ଭିଖାରୀ ନୁହେଁ– ଦେବତା । ଏଇଭଳି ଦେବତା ପୂର୍ବ-କାଳରେ ବହୁଳ ଭାବରେ ଥିଲେ ବୋଲି ଏ ଦେଶର ଆଉ ଗୋଟିଏ ନାମ ପୁଣ୍ୟ ଭୂମି ବା ଦେବଭୂମି ।

ଆଜି ତା'ର ଆଦର୍ଶ କାହିଁ ? ଯଦି ବା ଅଛି ତା' କେବଳ କାହାଣୀ ଆକାରରେ– କଳ୍ପିତ ଗଳ୍ପାକାରରେ ।

ସାରକଥା, ଅନ୍ତଃସାର ଶୂନ୍ୟ ଉଚ୍ଚ ଶିକ୍ଷା ପ୍ରାପ୍ତ ବା ନବ୍ୟସଭ୍ୟ ପରି ପୂରିତ ଆଧୁନିକ ଭାରତର ଏହି ସ୍ୱାର୍ଥୈକଦର୍ଶିତା ଦୋଷର କଥଞ୍ଚିତ ନିରାକରଣ ପାଇଁ ଓ ଜାତୀୟ ସମାଜର ସୁଦୃଷ୍ଟି ଆକର୍ଷଣ ହେତୁ ହିଁ ଶିଷ୍ୟ (ପୁତ୍ର)କୁ ଆଦିଗୁରୁ (ମାଆ) କହୁଛନ୍ତି :–

"ଦୁଖୀ ଭିଖାରୀ ଦେଖିଲେଁ ପୁତା
ଛାଡ଼ି କରି ତୋର୍ କବାର୍ ବୁତା
ମୁଠେ ଗର୍ବେ ଭିଖ୍ ଦେଉଥିବୁ
ନାଇଁ ଦେଖାବୁ ଠାନି" ।

"ଠାନି" (ଠାଣି) ଅର୍ଥ ଏସ୍ଥଳରେ ଆଭିଜାତ୍ୟ ଜନିତ ବେଖାତିର ଅଭିମାନ ।

ହା : ମୁଁ : ଜର୍ଜ ହା: ଇ: ସ୍କୁଲ ଛାତ୍ରାବାସ
ବରଗଡ଼
ତା. ୧୧-୭-୬୦

ଇତି
ଶ୍ରୀ ଖଗେଶ୍ୱର ଶେଠ

**(୯) ଛଦ୍ମବେଶର ରହସ୍ୟ ଭେଦ (?) :**

Arther Conan Doyle ଙ୍କ "The Hound of the Baskervilles" ଉପନ୍ୟାସର ଛାୟାରେ ଏହା ଲିଖିତ । ଏହି ପୁସ୍ତକଟି ସମ୍ବଲପୁର କ୍ୱାଲିଟି ପ୍ରିଣ୍ଟର୍ସରେ ମୁଦ୍ରିତ ।

(୧୦) ଦୋଳି, ବଉଳି, ହୁମୋ ଓ ସଜନୀ (ସମସ୍ତ କ୍ଷୁଦ୍ର ପଦ୍ୟ ପୁସ୍ତକ) ଏଗୁଡ଼ିକ ୧୯୩୫ରୁ ୧୯୩୭ ସାଲ୍ ମଧ୍ୟରେ ପ୍ରକାଶିତ ହୋଇଥିବାର ଅଧିକ ସମ୍ଭାବନା ଅଛି । ଏଗୁଡ଼ିକ ନାରୀଜାତିକୁ ଉପଦେଶାମୃତ । ବିଶେଷକରି କନ୍ୟାମାନଙ୍କ ବୈବାହିକ ଜୀବନରେ କି ଭଳି ପତିବ୍ରତା ଧର୍ମ ସହିତ ସାଂସରିକ ଜୀବନ ମଧୁମୟ ହେବ; ସେ ସମ୍ବନ୍ଧରେ କବିଙ୍କ ଉପଦେଶାବଳୀରେ ପରିପୂର୍ଣ୍ଣ । (ଏହା ବାହାରେ ଶଶିଭୂଷଣଙ୍କ "ଭୋଟର୍ ଭାଇ" ନାମ୍ନୀଖଣ୍ଡେ କ୍ଷୁଦ୍ର ପଦ୍ୟ-ପୁସ୍ତିକା ପ୍ରକାଶିତ ହୋଇଛି ।)

(୧୧) Gleanings from Gangadhar : କବି ଶଶିଭୂଷଣଙ୍କ ଏହି ବହିଟି ୧୯୬୦ ମସିହାରେ ପ୍ରକାଶିତ । ସଂସାର ପ୍ରେସ୍, କଟକ । ଗଙ୍ଗାଧରଙ୍କ ୬ଟି କବିତା ଇଂରାଜୀରେ ଅନୂଦିତ ।

(୧୨) ରସକବିତା (ସମ୍ବଲପୁରୀ)

(୧୩) ଭୋଟର ଭାଇ ।

## ୨ । ମୃତ୍ୟୁପରେ ପ୍ରକାଶିତ ରଚନାବଳୀ

ତା ୫-୬-୧୯୭୬ ମସିହାରେ ସାହିତ୍ୟିକ ଶଶିଭୂଷଣ ମିଶ୍ରଶର୍ମାଙ୍କ ସ୍ୱର୍ଗାରୋହଣ ହେଲା । ଫଳରେ ଅଶୀଦଶକରେ ଶଶିଭୂଷଣ ଜନତାର ଅନ୍ତରାଳରୁ ସଂପୂର୍ଣ୍ଣ ଲୁଚି ବସିବା ଉପରେ । ଫଳରେ ତାଙ୍କର ମୂଲ୍ୟବାନ୍ କୃତିଗୁଡ଼ିକର ସଂଗ୍ରହ, ସଂପାଦନା ଓ ସମୀକ୍ଷା

ହୋଇ ନ ପାରିବାରୁ ସେ ଏକାବେଳକେ ଓଡ଼ିଆ ସାହିତ୍ୟର ଇତିହାସରେ ବହୁଭାବରେ ଉପେକ୍ଷିତ ଓ ଅନାଲୋଚିତ ହୋଇ ରହିଗଲେ । ତାଙ୍କର ପବିତ୍ର ମହାପ୍ରୟାଣର ସୁଦୀର୍ଘ ୨୪ ବର୍ଷ ପରେ ଶଶିଭୂଷଣଙ୍କ ଆଜୀବନ ପ୍ରତିଭା ପୂଜକ ଶିକ୍ଷାବିଦ୍ ପୂଜ୍ୟ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶଙ୍କ ଅଭିନବ ସଦୁଦ୍ୟମରେ କେତେକ ରଚନାବଳୀର ଉଦ୍ଧାର କାର୍ଯ୍ୟ ହେବା ସଙ୍ଗେ ସଙ୍ଗେ ପ୍ରକାଶିତ ଓ ଆଲୋଚିତ ହୋଇପାରିଛି । ଇଂରାଜୀରେ ଗୋଟିଏ କଥା ଅଛି– "ଜଣେ ଗୁଣୀପୁତ୍ର ତାର ପିତାଙ୍କୁ ସୁଖୀ କରାଇଥାଏ ।" ଏହି ଦୃଷ୍ଟିରୁ ସାହିତ୍ୟିକ ଶଶିଭୂଷଣ ମିଶ୍ରଶର୍ମାଙ୍କୁ ତାଙ୍କ ଆଜୀବନ ପ୍ରତିଭାପୂଜକ ଶ୍ରୀଯୁକ୍ତ ପ୍ରସନ୍ନ କୁମାର ଦାଶ ସୁଖୀ କରାଇଛନ୍ତି । ଅନ୍ୟ ଅର୍ଥରେ ଏହା କବିଙ୍କ ପାଇଁ ଆମର ଜାତୀୟ କର୍ତ୍ତବ୍ୟ ବୋଲି ବୁଝିବାକୁ ହେବ । ଶଶିଭୂଷଣଙ୍କ ମୃତ୍ୟୁପରର ପ୍ରକାଶିତ ରଚନା ଗୁଡ଼ିକ ହେଉଛି :

ଓଡ଼ିଆ : (୧) ପ୍ରୀତିପାତ୍ର – ୨୦୦୦

(୨) ରସ୍ କବିତା ଓ ସମ୍ବଲପୁରୀ କବିତା ସଂକଳନ– ୨୦୦୨

(୩) ପୁନରାଗଚ୍ଛ ସିଦ୍ଧାର୍ଥ – ୨୦୦୨

(୪) ଓଡ଼ିଆ ଗୀତା – ୨୦୦୫

(୫) ପ୍ରବନ୍ଧ ସଂକଳନ – ୨୦୧୩

ଇଂରାଜୀ : (1) The Banished – 2006

(2) Gleanings from Gangadhar – 2nd Edition

**(୧) ପ୍ରୀତିପାତ୍ର – (୨୦୦୦)**

ଉମର ଖୈୟାମଙ୍କ "ରୁବାୟତ୍"ର ଓଡ଼ିଆ ଅନୁବାଦ ହେଉଛି "ପ୍ରୀତିପାତ୍ର" । ଶଶିଭୂଷଣଙ୍କ ଅନୂଦିତ ଏହି "ପ୍ରୀତିପାତ୍ର" ଗ୍ରନ୍ଥଟି ୨୦୦୦ ମସିହା ନଭେମ୍ବର ମାସରେ ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ଆର୍ଥିକ ଆନୁକୂଲ୍ୟରେ ପ୍ରକାଶିତ । ଓଡ଼ିଆରେ ଏହା ବହୁ ପୂର୍ବରୁ ଅନୂଦିତ ହୋଇଥିଲେ ହେଁ ତାହା ଯଥାସମୟରେ ପ୍ରକାଶିତ ହୋଇନପାରି ପାଣ୍ଡୁଲିପି ଅବସ୍ଥାରେ ଦୀର୍ଘଦିନ ରହି ଯାଇଥିଲା । ତାଙ୍କର ଅନୁବାଦ ପରେ ପରେ ଶଶିବାବୁ ଜାଣିବାକୁ ପାଇଲେ ଯେ, ତାଙ୍କ ପୂର୍ବରୁ ବି' ଓଡ଼ିଆରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ଶ୍ରୀ ଅର୍ଜୁନ ଦାସ, ରାୟ ସାହେବ ଶ୍ରୀ ଜଗତ୍‌ବନ୍ଧୁ ମହାପାତ୍ର, ଶ୍ରୀ ଗୋପାଳ କାନୁନ୍‌ଗୋ, କବି ଶ୍ରୀ ରାଧାମୋହନ ଗଡ଼ନାୟକ, ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରମୁଖ ଅନୁବାଦ କରି ସାରିଥିଲେ । ତେଣୁ ନିଜ ଅନୂଦିତ ରଚନାକୁ ଶଶିବାବୁ ସେତେବେଳେ ପ୍ରକାଶ କରିବାପାଇଁ ବୋଧହୁଏ ଇଚ୍ଛାପ୍ରକାଶ କରିନଥିଲେ । ନିଜ ଭାଷାରେ କହିଛନ୍ତି :

"ଶିକ୍ଷାଦୀକ୍ଷାରେ ଓ ପଦ ମର୍ଯ୍ୟାଦାରେ ଏମାନଙ୍କର ଉଚ୍ଚତର ସ୍ଥାନ ଥିବାରୁ ଓ ଏମାନଙ୍କର ଅନୁବାଦ ପ୍ରକାଶିତ ହୋଇ ସାରିଥିବାରୁ ଏହାର ପ୍ରକାଶନ ନିରର୍ଥକ ବୋଲି ପ୍ରଥମେ ଧରି ପକାଇଲି । ପରେ ଭାବିଲି

କିରଣ ଦେବାପାଇଁ ଚନ୍ଦ୍ରସୂର୍ଯ୍ୟତାରକା ଥିଲେ ହେଁ ଲୋକେ ଦୀପ ଦିହୁଡ଼ିର ବ୍ୟବହାର କରିଥାନ୍ତି ।" (ପ୍ରୀତିପାତ୍ର–୨୦୦୦, ପୃ. ଘ)

ଏଥିରୁ ତାଙ୍କର ବିନମ୍ରତା, ବିନୟତାର ପ୍ରଭୃତି ଦିବ୍ୟ ଗୁଣର ସୂଚନା ମିଳେ । ନିଜେ ଅନୁବାଦ କରିଥିଲେ ବି' ଓଡ଼ିଶାର ଅନ୍ୟ ସାହିତ୍ୟିକ ମାନଙ୍କୁ ନିଜର ଗଭୀର ସମ୍ମାନ ପ୍ରଦର୍ଶନ କରିଛନ୍ତି, ନିଜର କୃତଜ୍ଞତା ଜଣାଇଛନ୍ତି । ଏଥିରୁ ତାଙ୍କର ଅନନ୍ୟ ଚିତ୍ତତା ଏକାନ୍ତ ଲକ୍ଷ୍ୟଣୀୟ ।

୧୯୫୮ ମସିହାରେ ଶଶିବାବୁ "ପ୍ରୀତିପାତ୍ର"ର ପାଣ୍ଡୁଲିପିକୁ ଓଡ଼ିଶାର ବିଶିଷ୍ଟ କବି ଓ ସମାଲୋଚକ ଅଧ୍ୟାପକ ଶ୍ରୀ ଚିନ୍ତାମଣି ବେହେରାଙ୍କ ପାଖକୁ ପଠାଇଥିଲେ । ପ୍ରାବନ୍ଧିକ ଶ୍ରୀ ବେହେରା ଏହା ପାଠକରି ଶଶିବାବୁଙ୍କ ଅନୁବାଦ ସଂପର୍କରେ ଲେଖିଥିଲେ :

"ଓମାର୍‌ଙ୍କ କବିତାର ଅନ୍ତର୍ନିହିତ ମାଧୁରୀ, ବିସ୍ମୟ ଓ ରହସ୍ୟକୁ ଅନୁବାଦ ମଧ୍ୟରେ ରୂପାୟନ କରିବା ତୀକ୍ଷ୍ଣ ପ୍ରତିଭା, ଦକ୍ଷହାତ ଓ ଉଚ୍ଚ ହୃଦୟ ପକ୍ଷରେ ହିଁ କେବଳ ସମ୍ଭବପର । ସାହିତ୍ୟପ୍ରେମୀ ଶିକ୍ଷକ ଓ ସାଧକ ଶଶିଭୂଷଣ ମିଶ୍ରଶର୍ମାଙ୍କ ଅନୁବାଦ ପୂର୍ଣ୍ଣ ସଫଳତାର ଅଧିକାରୀ ନ ହେଲେ ମଧ୍ୟ ସ୍ୱକୀୟ ଶକ୍ତି ଓ ନିପୁଣତା ବଳରେ ଅନୁବାଦ କ୍ଷେତ୍ରରେ ଯେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇ ପାରିବ ଓ ଓଡ଼ିଆ କାବ୍ୟ ପାଠକର ରୁଚିକୁ ଖୟାମୀ କବିତାର ରସସ୍ୱାଦ ଦେଇ ପାରିବ, ଏଥିରେ କୌଣସି ସନ୍ଦେହ ନାହିଁ । ଗୋଟିଏ କବିତାର ଅନୁବାଦ ବିଭିନ୍ନ ହାତ ଦ୍ୱାରା ସଂପନ୍ନ ହେଲେ ମୂଳ କବିତାର ମହତ୍ତ୍ୱ ଓ ରସ ବୈଚିତ୍ର୍ୟ ପାଠକ ନିକଟରେ ବୃଦ୍ଧି ପାଇଥାଏ ଏବଂ ତୁଳନାତ୍ମକ ଆଲୋଚନା ପାଇଁ ପ୍ରଶସ୍ତ କ୍ଷେତ୍ର ମଧ୍ୟ ସୃଷ୍ଟି କରିଥାଏ ।" (ପ୍ରୀତିପାତ୍ର–୨୦୦୦, ପୃ. ୨-୩)

ଶଶିବାବୁଙ୍କ "ରୁବାୟତ୍"ର ଓଡ଼ିଆ ଅନୁବାଦ "ପ୍ରୀତିପାତ୍ର"ର କେତେକ ପଦ ଏଠାରେ ଉଦ୍ଧାର କରାଗଲା :

(୧)

"ଆଣ ଗୋ ଆଣ, ପ୍ରିୟେ ! ହୋଇ ଚଞ୍ଚଳ
ଚଷକେ ଭରି ସୁରା ଗୋଲାପୀ ଜଳ ॥
'ଅତୀତ'ର ସନ୍ତାପ, 'ଭବିଷ୍ୟ' ଭୟ
ବିନାଶି ହେବି ଆଜି ଆନନ୍ଦମୟ ॥
'କାଲି' ହୁଏତ ଆଉ ଆସିବ ନାହିଁ
ଜୀବନ ଅବା ଆଜି ଦିନକ ପାଇଁ ॥

(ପ୍ରୀତିପାତ୍ର–୨୦୦୦, ପୃ. ୨୬)

(୨)

ସବୁଠୁଁ ସୌମ୍ୟ ଆଉ ସୁଜନ ବୋଲି
ସମର୍ପି ଥିଲା ପ୍ରେମ ହୃଦୟ ଖୋଲି
ଯାହା ଯାହାରେ ଦେଖ, ଦେଖ, ଗୋ ରାଣି,
କାଳ ଆଉ କପାଳ ଲିଖନ ମାନି,
କିଏ ବା ପିଇ ଥରେ, କିଏ ଦି ଥର
ଚାଲିଗଲେ ନ ଦେଇ କିଛି ଖବର ।।

(ପ୍ରୀତିପାତ୍ର-୨୦୦୦, ପୃ. ୨୭)

(୩)

କରୁ, ଗୋ, ବେଳ ଥାଉ, ପରାଣମିତ
ଧୂଳି ହୋଇବା ଆଗୁ, ଆନନ୍ଦ ଚିତ୍ତ ।।
ଧୂଳିରୁ ଧୂଳି ହୋଇ ଧୂଳିକି ଗଲେ
ସୁରା, ସଙ୍ଗୀତ ଆଉ ନ ପାଉ ଭଲେ ।।
ବିଶ୍ରାମି ଥିବା ତହିଁ ଅନନ୍ତ କାଳ;
ପ୍ରାଣ ସଙ୍ଗିନି ! ଅନ୍ୟ କଥା ନ ଭାଳ ।।”

(ପ୍ରୀତିପାତ୍ର-୨୦୦୦, ପୃ. ୨୮)

ଓମାର୍ ଖୈୟାମ୍ ହେଉଛନ୍ତି ବିଶ୍ୱବନ୍ଦ୍ୟ କବି ଓ ସାହିତ୍ୟ ସ୍ରଷ୍ଟା । ସେ “ରୁବାୟତ୍”, “ପାରସ୍ୟ ବୀଣା” ପ୍ରଭୃତି କାବ୍ୟ ରଚନା କରି ପୃଥିବୀରେ ଅମର ଯଶର ଅଧିକାରୀ ହୋଇଛନ୍ତି । କବି ଉମର୍ ଖୈୟାମ୍‌ଙ୍କ କାବ୍ୟ ପ୍ରତିଭା ସଂପର୍କରେ ଉଚ୍ଚ ଅଭିମତ ଦେଇ ପଣ୍ଡିତ ନୀଳମାଧବ ପାଣିଗ୍ରାହୀ ଲେଖିଛନ୍ତି :

“ପାରସ୍ୟ ମରୁଦେଶର ମଧ୍ୟଯୁଗୀୟ ମହାତ୍ମା ଉମର୍ ଖୈୟାମ୍ ତାଙ୍କ ରସସ୍ରାବୀ ‘ରୁବେଇ’ (ଚତୁଷ୍ପଦୀ କବିତା) ମାନଙ୍କ ପାଇଁ ସାହିତ୍ୟ ସଂସାରରେ ସୁବିଖ୍ୟାତ୍ । ସେଇ ରୁବେଇ ଗୁଡ଼ିକର ଆବେଦନ ସାର୍ବଜନୀନ ଓ ସନାତନ, ମାତ୍ର ପ୍ରେମ କବିତା ଭାବରେ ନୁହେଁ । ଏକ ନିର୍ମମ, ନିୟତି ନିୟନ୍ତ୍ରିତ ସୃଷ୍ଟି ଯନ୍ତ୍ର ଭିତରକୁ ନିକ୍ଷିପ୍ତ ଏବଂ ନିଃସହାୟ ଭାବରେ ନିଷ୍ପେଷିତ, ନିପୀଡ଼ିତ ଓ ପରାହତ ମାନବର ବିଦ୍ରୋହୀ ଅନ୍ତର୍ଦାହ ସହିତ ଆନନ୍ଦ ସ୍ୱରୂପ ସୃଷ୍ଟିକର୍ତ୍ତାଙ୍କଠାରେ ଅବିଚଳିତ ଆସ୍ଥା– ଏଇ ଧରଣର ଦୋଦୁଲ୍ୟମାନ ଦ୍ୱୈତ ଭାବର ସ୍ୱାନୁଭୂତି-ରସାଣିତ ଅଭିବ୍ୟକ୍ତି ଉମର୍ କବିତାର ନାନ୍ୟତ୍ର ଲବ୍ଧ ନିଜସ୍ୱ । ସଂକ୍ଷେପରେ କହିବାକୁ ଗଲେ ବିଶ୍ୱ ସାହିତ୍ୟରେ ଉମର୍ କବିତାର ପଟାନ୍ତର ନାହିଁ । ଉମର୍ ଯେ ବିଶ୍ୱ ଶ୍ରେଷ୍ଠ କବି– ଏକଥା ଏଠାରେ କୁହାଯାଉନାହିଁ; ମାତ୍ର ସେ ଯେଉଁ ଶ୍ରେଣୀର, ଯେଉଁ ପ୍ରକାରର ବା ଭାବଧାରାର

କବିତା ରଚନା କରିଯାଇଛନ୍ତି ସେଥିରେ ସେ ଅତୁଳନୀୟ, ଅପ୍ରତିଦ୍ୱନ୍ଦୀ ।'' (ଅଦ୍ୱିତୀୟ ଉମର୍ ଖୈୟାମ୍– (ପ୍ରବନ୍ଧ), ପାଞ୍ଚଜନ୍ୟ-୧/୩, ଦଶହରା-୧୯୮୦, ପୃ.୩୯) ।

**(୨) ରସ୍ କବିତା ଓ ସମ୍ବଲପୁରୀ କବିତା ସଂକଳନ :**

ଶଶିଭୂଷଣ ମିଶ୍ରଶର୍ମାଙ୍କ ରସ କବିତା ନାମରେ ଖଣ୍ଡେ ସମ୍ବଲପୁରୀ କାବ୍ୟ ସଂକଳନ ପ୍ରକାଶିତ ହୁଏ ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ସଂଗ୍ରହ ଓ ସଂପାଦନାରେ ୨୦୦୨ ମସିହାରେ । ଏହି ପୁସ୍ତକର ପ୍ରକାଶକ ମଧ୍ୟ ଶ୍ରୀ ପ୍ରସନ୍ନ କୁମାର ଦାଶ । ଏଥିରେ ଛୋଟ ବଡ଼ ପାଞ୍ଚଟି କ୍ଷୁଦ୍ର ପୁସ୍ତିକା ସଂକଳିତ ହୋଇଛି । ସେଗୁଡ଼ିକ ହେଲା : (୧) ରଖ୍, ମା ପଲ୍‌ସା ଗୁଛା, (୨) ମା, କହ ଗୁଟେ କଥାନି, (୩) ଗଉର୍ ବୂଢ଼ାର୍ ସମାର୍ ହାଟ୍, (୪) ଏକ ରାଇଜେ ଥିଲା ରାଜା ଏବଂ (୫) ରସ୍ କବିତା । ଏଥିରେ ସ୍ଥାନିତ ହୋଇଥିବା (୧) ରଖ୍, ମା ଫଲ୍‌ସା ଗୁଛା ଓ (୨) ମା, କହ ଗୁଟେ କଥାନି ପ୍ରଭୃତି ଯଥାକ୍ରମେ ୧୯୫୯ ଓ ୧୯୬୪ ମସିହାରେ ପ୍ରଥମଥର ପାଇଁ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଥିଲା । ଅବଶିଷ୍ଟ ତିନୋଟି ଲେଖା– "ଗଉର୍ ବୂଢ଼ାର୍ ସମାର୍ ହାଟ୍", "ଏକ୍ ରାଇଜେ ଥିଲା ରଜା" ଏବଂ "ରସ୍‌କବିତା"ର କେତେକ କବିତା ମଧ୍ୟ ପୂର୍ବରୁ ପ୍ରକାଶିତ । ପାଠକେ ତେବେ ଆସନ୍ତୁ ଦେଖିବା ତାଙ୍କର ଗୋଟିଏ ସମ୍ବଲପୁରୀ କବିତାର ଚମତ୍କାରିତା । "ଇ ଦୁନିଆଁ ଏକ ଧରମ୍‌ଶାଳା" କବିତାରେ ଲେଖିଛନ୍ତି;

"ଇ ଦୁନିଆଁ ଏକ୍ ଧରମ୍‌ଶାଲା
ଯିବାର୍ ଆସ୍‌ବାର୍ ବାଟେଁ ନାଇଁନ କବାଟ୍ କୁଁଚି ତାଲା ।୦।
ବାପ୍ ନାଇଁ ରହେ ମା ନାଇଁ ରହେ ରହେ ନାଇଁ ବହେନ୍ ଭାଏ
ଶାଶ୍ ଶଶୁର୍ କକାକାକୀ ନାଇଁ ରହନ୍ ସଭେ ଯିବେ ସାଏଁ ସାଏଁ
ସମ୍‌କୁଁ ଛାଡ୍‌ବାର୍ ପଡ୍‌ବା ଇଟା କାଏଁ ଗୁରୁ କାଏଁ ଚାଲା ।୧।
ଘର୍‌ବାଡ଼ି ଝାଁପି ପେଡ଼ି ନେଇଁପାରୁ ନାଇଁ କିଛି
କାଏଁଥିର୍ ଲାଗିଁ ବନୌଚୁଛେଁ ଦୁଇ ତାଲା ତିନ୍ ତାଲା ।୨।
ଜୀବନ୍ ଥିଲେଁ ସବୁ ସିନା ଖାଇଥା ପେଟ୍‌କେରେ
ପୁଛେ ପୈସେ ଦେଇଥା ତ କାମ୍ ଦେବା ବାଟ୍ କେରେ
ଦିନ୍ ରାଏତ୍ ହର୍‌ଦମ୍ ବଲ୍ ନନ୍ଦ୍‌ଲାଲା ଦଶ୍‌ରଥ୍ ଲାଲା ।୩।

(ରସ୍ କବିତା- ୨୦୦୨, ପୃ.୨୮)

ଶଶିଭୂଷଣଙ୍କ ଏହି କବିତାରେ ପଲ୍ଲୀଜୀବନର ବାସ୍ତବଛବି, ଗଭୀର ଜୀବନ ଦର୍ଶନ ଓ ଉଚ୍ଚ ଚିନ୍ତାଧାରାର ରୂପ ପ୍ରକାଶ ପାଇଛି । "ରସ୍ କବିତା" ପୁସ୍ତକରେ ଥିବା ଅନ୍ୟାନ୍ୟ ପ୍ରାୟ ସମସ୍ତ କବିତାରେ ଏହି ଅନୁରୂପ ଭାବ ଓ ଚିନ୍ତାର ପ୍ରକାଶ ପ୍ରାୟତଃ ଉପସ୍ଥିତ ।

**(୩) ପୁନରାଗଛ ସିଦ୍ଧାର୍ଥ : (୨୦୦୨)**

ଶ୍ରୀ ଶଶିଭୂଷଣ ମିଶ୍ରଶର୍ମାଙ୍କ କର୍ତ୍ତୃକ ବିରଚିତ ଏବଂ ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ପ୍ରଚେଷ୍ଟାରେ ୨୦୦୨ ମସିହାରେ ପ୍ରକାଶିତ "ପୁନରାଗଛ ସିଦ୍ଧାର୍ଥ" କବିତା ପୁସ୍ତକ ଖଣ୍ଡିକ ଉତ୍କଳ ସାହିତ୍ୟରେ ଏକ ଉଜ୍ଜ୍ୱଳ ରତ୍ନ ସ୍ୱରୂପ ବିବେଚ୍ୟ । "ପୁନରାଗଛ ସିଦ୍ଧାର୍ଥ" ପୁସ୍ତକର ନାମକରଣ ସମ୍ବନ୍ଧରେ ବରଗଡ଼ ମହିଳା ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷ ଡକ୍ଟର ନନ୍ଦକିଶୋର ଦାଶ 'ଅଭିମତ' ସ୍ତମ୍ଭରେ ଲେଖିଥିଲେ :

> "ସାହିତ୍ୟର ପ୍ରତିଟି ବିଭାଗରେ ତାଙ୍କର ଲେଖନୀ ଚଳଚଞ୍ଚଳ ହୋଇ ଉଠିଛି । ବିଭିନ୍ନ କବିତାରୁ ତାଙ୍କର ପ୍ରଗାଢ଼ ଭଗବତ୍ ବିଶ୍ୱାସ ଅନୁମେୟ । ଗାନ୍ଧିଜୀ ଓ କବି ଗଙ୍ଗାଧର ମେହେର ତାଙ୍କର ପ୍ରିୟ-ପୁରୁଷ ଥିବାର ଏକ ସୁସ୍ପଷ୍ଟ ସୂଚନା ମଧ୍ୟ ମିଳେ । ସିଦ୍ଧାର୍ଥ ଗୌତମଙ୍କ ଉପରେ ୰ ମିଶ୍ରଙ୍କର ପ୍ରଗାଢ଼ ଆସ୍ଥା ଥିବାରୁ ବନ୍ଧୁ ଶ୍ରୀଦାଶ ଉପସ୍ଥିତ କବିତା ସଂକଳନ ର ନାମ 'ପୁନରାଗଛ ସିଦ୍ଧାର୍ଥ' ରଖିବାର ଯଥାର୍ଥତା ରହିଛି ।"

(ପୁନରାଗଛ ସିଦ୍ଧାର୍ଥ – ୨୦୦୦, ପୃ. ଅଭିମତ)

"ପୁନରାଗଛ ସିଦ୍ଧାର୍ଥ" ପୁସ୍ତକରେ ସର୍ବମୋଟ୍ ଏକଶହ ସାତଟି କବିତା ସ୍ଥାନ ପାଇଛି ।

**(୪) ଓଡ଼ିଆ ଗୀତା : (୨୦୦୫)**

ଶ୍ରୀମଦ୍ ଭଗବଦ୍ ଗୀତାର ୧ମ ଓ ୨ୟ ଅଧ୍ୟାୟର ଓଡ଼ିଆ ଅନୁବାଦ ହେଉଛି ଓଡ଼ିଆ ଗୀତା । ଏହି ପୁସ୍ତକ ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ଆର୍ଥିକ ସାହାଯ୍ୟରେ ୨୦୦୫ ମସିହା ମଇ ମାସରେ ପ୍ରକାଶିତ । ଏହି ଅନୁବାଦ ଗ୍ରନ୍ଥକୁ ଶଶିବାବୁ ତାଙ୍କ ପିତା ପଣ୍ଡିତ ହରିହର ମିଶ୍ରଙ୍କୁ ଉତ୍ସର୍ଗ କରି ଲେଖିଥିଲେ :

> "ମୋର ପୂଜ୍ୟପାଦ ପିତା ସ୍ୱର୍ଗତ ପଣ୍ଡିତ ଶ୍ରୀହରିହର ମିଶ୍ର ଶର୍ମାଙ୍କ ପଦ୍ମପାଦ ପ୍ରାନ୍ତରେ ଭକ୍ତ୍ୟୁପହାର ସ୍ୱରୂପ ଏହି ଓଡ଼ିଆ ଗୀତା ନାମ୍ନୀ ପୁସ୍ତିକାକୁ ସ୍ଥାପନ କଲି– ତାଙ୍କଠାରେ ମୁଁ ନାନାଭାବରେ ଋଣୀ । ମୋର ଏହି କ୍ଷୁଦ୍ର ଉପହାରକୁ ଅଙ୍ଗୀକାର କରି ସେ ମୋତେ ପ୍ରୋକ୍ତ ଋଣରୁ ମୁକ୍ତ କରିବେ ବୋଲି ବଳବତୀ ଆଶା ପୋଷଣ କଲି ।।"
>
> କୃପାପ୍ରାର୍ଥୀ– ଅଧମ ଶଶିଭୂଷଣ ।''

**(୫) ପ୍ରବନ୍ଧ ସଂକଳନ : (୨୦୧୩)** ଏହି ମୂଲ୍ୟବାନ ପ୍ରବନ୍ଧସଂକଳନଟି ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ଅଭିନବ ସଦୁଦ୍ୟମରେ ପ୍ରକାଶିତ ହୋଇଛି ।

**(୬) The Banished :** (2006)

କବି ଗଙ୍ଗାଧର ମେହେରଙ୍କ "ତପସ୍ୱିନୀ" କାବ୍ୟର ସଂପୂର୍ଣ୍ଣ ଇଂରାଜୀ ଅନୁବାଦ ହେଉଛି "The Banished" । ଓଡ଼ିଶାର ବିଶିଷ୍ଟ ବିଦ୍ୱାନ୍ ତଥା ଇଂରାଜୀ ପ୍ରଫେସର

ମୀନକେତନ ପୁରୋହିତଙ୍କ ସଂପାଦନାରେ ଏହି ବହିଟି ପ୍ରକାଶ ପାଇଛି ୨୦୦୬ ମସିହା ଫେବୃୟାରୀ ମାସରେ । ଏହାର ପ୍ରକାଶକ ମଧ୍ୟ ଶ୍ରୀ ପ୍ରସନ୍ନ କୁମାର ଦାଶ । ଏହି ବହିଟି ପ୍ରକାଶ ପାଇବା ପରେ ବିଶେଷ ଲୋକପ୍ରିୟ ହୋଇପାରିଥିଲା । କବି ଗଙ୍ଗାଧରଙ୍କ କାବ୍ୟ ପ୍ରତିଭାକୁ ଶଶିବାବୁ କେଉଁ ଦୃଷ୍ଟିରେ କେତେ ପରିମାଣରେ ବୁଝିପାରିଥିଲେ ତାହା ଏହି ପୁସ୍ତକର ଅଧ୍ୟୟନ ପରେ ଜଣାପଡ଼େ ।

## (୩) ଅପ୍ରକାଶିତ ରଚନାବଳୀ

କବି ଶଶିଭୂଷଣଙ୍କ ଅପ୍ରକାଶିତ ରଚନାବଳୀ ବହୁତ । ତାହାକୁ ପୁଣି ଦୁଇଟି ଭାଗରେ ବିଭକ୍ତ କରାଯାଇପାରେ ।

(୧) ଓଡ଼ିଆ ରଚନାବଳୀ । (୨) ଇଂରାଜୀ ରଚନାବଳୀ ।

### (୧) ଓଡ଼ିଆ ରଚନାବଳୀ :

(୧) ବାସୁଦେବ ଶ୍ରୀକୃଷ୍ଣ – (ପ୍ରବନ୍ଧ)
(୨) ଯୁବକ ଯୁବତୀ – (ପ୍ରବନ୍ଧ)
(୩) ପ୍ରେମ ସିନ୍ଧୁ – (ପ୍ରବନ୍ଧ)
(୪) ଭଞ୍ଜ ନନ୍ଦିନୀ – (ପ୍ରବନ୍ଧ)
(୫) ପ୍ରେମ ଜାହ୍ନବୀ – (ଉପନ୍ୟାସ)
(୬) ତରଙ୍ଗିଣୀ – (କାବ୍ୟ)
(୭) ଭର୍ତ୍ତୃହରି ଶତକ ସାର – (ଅନୁବାଦ କବିତା)
(୮) ନୀତି ପୁଷ୍ପହାର – (ଖଣ୍ଡକବିତା)
(୯) ଯମପୁରୀର ସପନ (ଖଣ୍ଡକବିତା)
(୧୦) ହୋ ହୋ ହୁଲେରେ – (ସମ୍ବଲପୁରୀ ଖଣ୍ଡ କବିତା)
(୧୧) ଗାଁ–ଗହଳର ଅକୁହାକଥା – (କ୍ଷୁଦ୍ରଗଳ୍ପ)
(୧୨) ଅସଲ ରାମାୟଣ – (କାବ୍ୟ)
(୧୩) ଓଡ଼ିଆ ତୁଳସୀ ରାମାୟଣ – (୧ମ ଭାଗ)

### (୨) ଇଂରାଜୀ ରଚନାବଳୀ :

(1) Soliloquy of a prisioner : (ଉତ୍କଳ ମଣି ପଣ୍ଡିତ ଗୋପବନ୍ଧୁ ଦାଶଙ୍କ "ବନ୍ଦୀର ଆତ୍ମକଥା" କାବ୍ୟର ଇଂରାଜୀ ଅନୁବାଦ ।)
(2) Mahatma Gandhi and Rama Rajya – (prose)
(3) Survival or Suicide – (prose)
(4) Ideal Education – (prose) ।
(5) Gandhi The Superman – (Drama)

ଏହା ବାହାରେ ଶଶିଭୂଷଣଙ୍କ ଅନେକ ଉପାଦେୟ ରଚନା ନଷ୍ଟ ହୋଇଯାଇଛି । ବର୍ତ୍ତମାନ ଶଶିଭୂଷଣଙ୍କ ସମସ୍ତ ରଚନାବଳୀର ବିଶଦ ଆଲୋଚନା କରିବା ସମ୍ଭବ ନୁହେଁ । ତେଣୁ ପାଠକ-ପାଠିକାଙ୍କ ଅବଗତି ସକାଶେ କେତୋଟି ରଚନାର ଆଲୋଚନା ନିମ୍ନରେ ଦ୍ରଷ୍ଟବ୍ୟ :

(୧) ପ୍ରେମ ଜାହ୍ନବୀ– ଏକ ଅନୁଶୀଳନ

ଶଶିଭୂଷଣ ମିଶ୍ରଙ୍କ "ପ୍ରେମ ଜାହ୍ନବୀ" ହେଉଛି ଗୋଟିଏ ସଂପୂର୍ଣ୍ଣ ମୌଳିକ ଉପନ୍ୟାସ । ସମ୍ବଲପୁର ସହରର ଦୁଇଟି ମଧ୍ୟବିତ୍ତ ବ୍ରାହ୍ମଣ ପରିବାରରେ ଘଟିଥିବା ସତ୍ୟ ଘଟଣା ଉପରେ ଏହି ଉପନ୍ୟାସ ଖଣ୍ଡିକ ଲେଖାଯାଇଛି ।

ଶଶିଭୂଷଣ ମିଶ୍ରଙ୍କ "ପ୍ରେମ ଜାହ୍ନବୀ" ଉପନ୍ୟାସଟି ପାଠ କଲାପରେ କବି ମାୟାଧର ମାନସିଂହଙ୍କ "କମଳାୟନ" କାବ୍ୟର ନାୟକ 'କମଳ' ଓ ନାୟିକା 'କରୁଣା'ର କଥା ମନେ ପଡ଼ିଯାଏ । ଦେଶ ସେବା କରିବା ସକାଶେ ଉଭୟେ 'କମଳ' ଓ 'କରୁଣା' ଯେପରି ଅଣ୍ଟାଭିଡ଼ି ବାହାରି ପଡ଼ିଥିଲେ ଠିକ୍ ଏହି ଉପନ୍ୟାସରେ ଗୋପାଳ-ରମା ଏବଂ ସୁରେଶ କମଳା ଚାରିଜଣ ଯାକ ସରକାରୀ ଚାକିରି ପରିତ୍ୟାଗ କରି ଦେଶ ସେବାରେ ସମର୍ପିତ ହେବାକୁ ଆଗେଇ ଆସିଛନ୍ତି । ଏହି ଉପନ୍ୟାସର ପ୍ରତ୍ୟେକ ଅଧ୍ୟାୟରେ ତତ୍ତ୍ୱମୂଳକ ଆଲୋଚନା ସବୁ ରହିଛି । ମୌଳିକ ଚରିତ୍ରମାନଙ୍କର ଯଥାଯଥ ରୂପାଙ୍କନ ସହିତ ଉପନ୍ୟାସର ସ୍ଥାନେ ସ୍ଥାନେ ପଶ୍ଚିମ ଓଡ଼ିଶା, ବିଶେଷତଃ ସମ୍ବଲପୁରର ବିଶିଷ୍ଟ ବ୍ୟକ୍ତି ବିଶେଷଙ୍କୁ ସ୍ମରଣ ପୂର୍ବକ ତାଙ୍କର ବ୍ୟକ୍ତିଗତ ଓ ଚାରିତ୍ରିକ ମହତ୍ତ୍ୱକୁ ଫୁଟାଇଛନ୍ତି । ତାଙ୍କର ଜୀବନ ଓ ପ୍ରତିଭାର ମର୍ମ ଉଦ୍‌ଘାଟନ କରିଛନ୍ତି ଏହି ଉପନ୍ୟାସରେ ।

(୨) ଭଞ୍ଜନନ୍ଦିନୀ : (ଗଦ୍ୟରଚନା)

କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ "ଲାବଣ୍ୟବତୀ"କୁ ସେ "ଭଞ୍ଜନନ୍ଦିନୀ" ବୋଲି ସମ୍ବୋଧନପୂର୍ବକ ତାହାର ଗଦ୍ୟାନୁବାଦ କରିଛନ୍ତି । ସମ୍ଭବତଃ, ଶଶିବାବୁ ହିଁ ପ୍ରଥମ ବ୍ୟକ୍ତି ଯିଏକି ସଂପୂର୍ଣ୍ଣ "ଲାବଣ୍ୟବତୀ" କାବ୍ୟକୁ ବହୁ ପୂର୍ବରୁ ପ୍ରବନ୍ଧ ରୂପରେ ଉପସ୍ଥାପନ କରିଛନ୍ତି । ଉତ୍କଳର ସୁଧୀମଣ୍ଡଳୀ ଓ ବିମୁଗ୍ଧ ପାଠକ-ପାଠିକା ମାନଙ୍କ ଜାଣିବା ସକାଶେ "ଲାବଣ୍ୟବତୀ" ପ୍ରଥମ ଛାନ୍ଦର ଗଦ୍ୟାନୁବାଦ ଏଠାରେ ଦିଆଗଲା :

(୧) ପୂର୍ବଜନ୍ମ ଚରିତ (ପ୍ରଥମ ଛାନ୍ଦ)

"ଦିନେ କୈଳାସରେ ଗୌରୀ ଏକାକୀ ବସିଥିଲେ । ତାଙ୍କର ପଶା ଖେଳିବାର ଇଚ୍ଛା ହେଲା । ସେ ମନକଲେ କି ଏକ ଅପୂର୍ବ କନ୍ୟା ଜାତ ହେଲା । ଜଗତଜନନୀଙ୍କ ଇଚ୍ଛା ବିଫଳ ହୁଅନ୍ତା କି ? ସୁଷମାରେ ତାର ସମାନ ହେବାଭଳି କେହି ତ୍ରିଲୋକରେ ନଥିଲେ । ଶାମୁକାରୁ ମୁକ୍ତା

ଜାତ ହେଲେ ଯେପରି ଦିଶେ, ଉମାଙ୍କଠାରୁ ଜାତ ହୋଇ ସେ କନ୍ୟା ସେପରି ଦିଶିଲା । ବାଞ୍ଛାରୁ ଜାତ ହେଲା ବୋଲି ତାର ନାମ ବାଞ୍ଛାବତୀ ରଖିଲେ । ତହୁଁ ଦୁହେଁ ପଶା ଖେଳି ବସିଲେ ।

ଅଳ୍ପ ସମୟ ଯାଇଛି ନ ଯାଇଛି ଘୋର ଡମ୍ବରୁନାଦ ଶୁଭିଲା । ପାର୍ବତୀଙ୍କ ମନରେ ବିଷାଦ ହେଲା । ସେ ଭାବିଲେ, "ଯଦି ଏ ଶୋଭାଙ୍ଗୀ ଉପରେ ହରଙ୍କ ନେତ୍ର ପଡ଼େ ତେବେ ତ ମୋର ସୁଭାଗୀପଣ ଭାଙ୍ଗିଯିବ । ପୁଣି ନିଜେ ରୋପିଲା ବିଷବୃକ୍ଷକୁ ତ ନାଶ କରିବାର ଦୋଷ ବୋଲି କହନ୍ତି । ଏହାକୁ ଜନ୍ମଦେଇ ମୁଁ ବା ମାରିବି କିପରି ?" ତହୁଁ ପାର୍ବତୀ ଜଣେ ବନଦେବୀଙ୍କୁ ଡାକି କହିଲେ, "ଏହାକୁ ନେଇ ଅଗମ୍ୟ ଅରଣ୍ୟ ଭିତରେ ଗୋଟିଏ ଘର ତୋଳି ରଖି ଆସ । ଘର ଦ୍ୱାର ନଡ଼େଇଁବା ପର୍ଯ୍ୟନ୍ତ ଏ ବଞ୍ଚିଥିବ । ଯେଉଁଦିନ ଦ୍ୱାର ଡେଇଁବ, ସେ ଦିନ ଏହାର ପ୍ରାଣଯିବ ଓ ଯେଉଁ ପୁରୁଷର କର ଧରିଥିବ, ଆର ଜନ୍ମରେ ସେ ଏହାର ପତି ହେବ ।" ବନଦେବୀ ବାଞ୍ଛାବତୀକୁ ନେଇ ଘୋର ଅରଣ୍ୟକୁ ଗଲା ଏବଂ ଗୌରୀ କହିବା ମତେ ସବୁକାମ କଲା ଓ କହି ଆସିଲା । ବାଞ୍ଛାବତୀ ସେଠାରେ ଏକାକୀ ଥାଏ । କେତେ ବର୍ଷ ବିତିଗଲା ।

ଦିନେ ପ୍ରଭାକର ନାମକ ଜଣେ କ୍ଷତ୍ରିୟ କୁମାର ସେଠାରେ ଉପସ୍ଥିତ ହେଲା । ଦିବ୍ୟନାରୀ ପାଇବାପାଇଁ ସେ ଅକଥନୀୟ ତପ ସାଧିଥିଲା । ଗ୍ରୀଷ୍ମଋତୁରେ ପଞ୍ଚାଗ୍ନି ତାପି ଥିଲା, ବର୍ଷାଋତୁରେ ଗୃହ ବାହାରେ ରହି ଝଞ୍ଜାବାତ, ଜଳଘାତ ଓ କରକାପାତ ସହିଥିଲା । ଶୀତଋତୁରେ କେତେବେଳେ ଜଳଶାୟୀ ହୋଇ, କେତେବେଳେ ବସ୍ତ୍ରହୀନ ହୋଇ ଓ କେତେବେଳେ ଭୂମିଶଯ୍ୟା କରି ରହିଥିଲା । ଏ ବାହାରେ ପ୍ରତିଦିନ ମୃତ୍ତିକାଶଙ୍କର ପୂଜା କରୁଥିଲା । ସେହି ସୁକୃତ ବଳରୁ ପ୍ରଭାକରର ନେତ୍ର ରତ୍ନମୟ ଗୃହ ଉପରେ ପଡ଼ିଲା । ତହୁଁ ସେ ଗୃହ-ପ୍ରାଙ୍ଗଣରେ ଯୁବତୀଟିଏ ଦେଖିଲା । ଏହି ଯୁବତୀ ଆମ୍ଭର ପୂର୍ବ ପରିଚିତା ବାଞ୍ଛାବତୀ । ତା'ର ମୁଖ, ହୀରା ଓ କାନ୍ତି ଚନ୍ଦ୍ରକୁ, ନୟନ ଓ ଭ୍ରୂ ସାରଙ୍ଗକୁ ଏବଂ ନାସା, ଓଷ୍ଠ ଓ କଟି ତରୁଣ ହରିକୁ ନିନ୍ଦା କରୁଛି । ତାକୁ ଦେଖିଲାକ୍ଷଣି ପ୍ରଭାକରକୁ ଅମର ସମ୍ପତ୍ତି ପାଇଲା ପରି ଲାଗିଲା । ତାର ନେତ୍ରରେ ସେ ନାରୀ ରୂପ-ପିତୁଳା ଲେଖି ହୋଇଗଲା । ବାଞ୍ଛାବତୀର ଶୋଭା ପିଞ୍ଜରୀରେ ପ୍ରଭାକରର ନେତ୍ର ଖଞ୍ଜରୀଟ ବନ୍ଧା ପଡ଼ିଗଲା । ସେ କେବଳ 'ରାମ ଶବ୍ଦ' ପ୍ରଥମା ବିଭକ୍ତି ବହୁ ବଚନକୁ ଘୋଷିବାକୁ ଲାଗିଲା । ଠିକ୍ ତେତେବେଳେ

ପ୍ରଭାକର ଉପରେ ବାଞ୍ଛାବତୀର ଦୃଷ୍ଟି ପଡ଼ିଲା । ଜନ୍ମାନ୍ଧକୁ ଦୃଷ୍ଟିଶକ୍ତି ମିଳିଲେ ଯେପରି ଲାଗେ, ତାକୁ ସେପରି ଲାଗିଲା । ତା'ର ତନୁ କଦମ୍ବ କୋରକ ପରି ରୋମାଞ୍ଚିତ ହେଲା । ସେ ତାର ନେତ୍ର ବଡ଼ଶୀରେ ପ୍ରଭାକରର ମନମୀନକୁ ହଠାତ୍ ଧରିନେଲା । ଉଭୟଙ୍କର ଉଭୟଙ୍କ ପ୍ରତି ସ୍ନେହଥିବାର ଉଭୟେ କଟାକ୍ଷରୁ ଜାଣିଲେ । ବାଞ୍ଛାବତୀ ଦେହଳୀ ଡେ଼ଇଁ ପ୍ରଭାକରକୁ ପାଛୋଟିବାକୁ ଅଗ୍ରସର ହେଲା । ପ୍ରଭାକର ତାକୁ ଛୁଇଁବା ମାତ୍ରେ ସେ ଜୀବହୀନ ହୋଇ ପଡ଼ିଗଲା । ଏ ସମୟେ ଆକାଶବାଣୀ ହେଲା, "ପ୍ରଭାକର, ତୁ ଯା ଗଙ୍ଗା ସାଗର ସଙ୍ଗମରେ ଝାସ ଦେବୁ, ଅନ୍ୟ ଜନ୍ମରେ ନୃପସୁତ ହୋଇ ଏ କନ୍ୟାକୁ ବଲ୍ଲଭୀ (ସ୍ତ୍ରୀ)ରୂପେ ପାଇବୁ । ଏହାର ଶବକୁ ଦହନ ନକରି ତୁ ଚାଲି ଯା" । ଏହାଶୁଣି ପ୍ରଭାକର କିଞ୍ଚିତ୍ ଶାନ୍ତି ଲାଭକରି ବଙ୍ଗଦେଶକୁ ଯାଇ ଗଙ୍ଗା ସାଗର ସଙ୍ଗମରେ ଝାସ ଦେଲା ।" (ଭଂଜନନ୍ଦିନୀ– ଅପ୍ରକାଶିତ ପାଣ୍ଡୁଲିପି, ପୃ.୧-୨)

ଭଂଜ ତଥା ତାଙ୍କର ସମକାଳୀନ ଲେଖକମାନଙ୍କ ରଚନାବଳୀକୁ ସେ କିଭଳି ପାଠ କରିଥିଲେ, କିଭଳି ବୁଝିଥିଲେ, ଏଥିରୁ ତାଙ୍କର ଗଭୀର ପାଣ୍ଡିତ୍ୟ ଥିବାର ସହଜରେ ଅନୁମେୟ । ଲାବଣ୍ୟବତୀ କାବ୍ୟକୁ ଏପରି ବିଶଦଭାବରେ ଗଦ୍ୟରେ ବୁଝାଇଛନ୍ତି । "ଭଂଜନନ୍ଦିନୀ" ଗଦ୍ୟ ରଚନାଟି ପ୍ରକାଶିତ ହେଲେ ଓଡ଼ିଆ ସାହିତ୍ୟରେ ଗୋଟିଏ ବଡ଼ ଅଭାବ ପୂରଣ ହେବ, ସନ୍ଦେହ ନାହିଁ ।

(୩) ଯୁବକ-ଯୁବତୀ : (ଗଦ୍ୟରଚନା) – (୨୦୧୪)

"ଯୁବକ-ଯୁବତୀ" ଖଣ୍ଡିଏ ଉପାଦେୟ ଗଦ୍ୟ ରଚନା । ଦେଶର ପ୍ରକୃତ ସଂପତ୍ତି କ'ଣ ହେବ ବା କ'ଣ ହେବା ଉଚିତ୍ ସେ ସମ୍ବନ୍ଧରେ ତାଙ୍କର ସୁଚିନ୍ତିତ ଅଭିମତ ମନ୍ତବ୍ୟ-ସବୁ ଏହି ପୁସ୍ତକରେ ସବିଶେଷ ବର୍ଣ୍ଣିତ ହୋଇଛି । ଏହି ପୁସ୍ତକରେ ଯେଉଁସବୁ ବିଷୟ ଉପରେ ଆଲୋକପାତ କରାଯାଇଛି ସେଗୁଡ଼ିକ ହେଲା :

(୧) ଦେଶର ପ୍ରଧାନ ସମ୍ପତ୍ତି,
(୨) ଯୁବକ ଯୁବତୀ କିଏ ?
(୩) ଓଜଃ କ'ଣ ?
(୪) ବୀର୍ଯ୍ୟର ଲକ୍ଷଣ ଓ ପ୍ରଭାବ
(୫) ଜୀବନର ଲକ୍ଷ୍ୟ କ'ଣ ?
(୬) ସାଧନା କ'ଣ ?
(୭) ଚାରି ଆଶ୍ରମ

(୮) ସହ ଶିକ୍ଷା

(୯) ପଞ୍ଚଦଶ ନୀତି

ଏଭଳି ବହୁ ବିଷୟରେ ଏହି ରଚନାଟି ପରିପୂର୍ଣ୍ଣ । ଏହା ଅଳ୍ପ ଦିନ ତଳେ ଶ୍ରୀ ପ୍ରସନ୍ନ କୁମାର ଦାଶଙ୍କ ଆର୍ଥିକ ଆନୁକୂଲ୍ୟରେ ପ୍ରକାଶିତ ହୋଇଛି ।

(୪) ପ୍ରେମ ସିନ୍ଧୁ : (ଗଦ୍ୟରଚନା)

ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଜୀବନୀ ଉପରେ ଗବେଷଣା କରି "ପ୍ରେମସିନ୍ଧୁ" ନାମକ ଆଉ ଏକ ଉଚ୍ଚକୋଟୀର ଗଦ୍ୟଗ୍ରନ୍ଥ ରଚନା କରିଛନ୍ତି । ଏହି ଗ୍ରନ୍ଥର ଅଧ୍ୟାୟ ଗୁଡ଼ିକ ଛୋଟ ହେଲେବି' ଏହା ବହୁ ଅଧ୍ୟାୟରେ ବିଭକ୍ତ । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଜନ୍ମବୃତ୍ତାନ୍ତ ପ୍ରସଙ୍ଗରେ ଶଶିବାବୁ ଲେଖିଛନ୍ତି :

> "ଆଜି ନବଦ୍ୱୀପ ବିଦ୍ୟାର ଆଲୋଚନାରେ ସର୍‌ଗରମ୍ । ପଣ୍ଡିତ-ପ୍ରବର ମହେଶ୍ୱର ବିଶାରଦ, ନୀଳାମ୍ବର ଚକ୍ରବର୍ତ୍ତୀ ଓ ରାମଚନ୍ଦ୍ର ସିଦ୍ଧାନ୍ତ ବାଗୀଶ ସ୍ଥାନେ ସ୍ଥାନେ ସଂସ୍କୃତ ଟୋଲମାନ ଖୋଲି ସୁଶିଷ୍ୟମାନଙ୍କୁ ବିଦ୍ୟାଦାନ କରିବାରେ ଅହରହ ବ୍ୟାପୃତ । ଉପେନ୍ଦ୍ର ମିଶ୍ରଙ୍କ ତୃତୀୟ ପୁତ୍ର ଜଗନ୍ନାଥ ମଧ୍ୟ ଅନ୍ୟତମ ଶିଷ୍ୟ । ବିଶାରଦଙ୍କ ପୁତ୍ର ବାସୁଦେବ ସାର୍ବଭୌମ ତାଙ୍କର ସହାଧ୍ୟାୟୀ । ଅଳ୍ପଦିନରେ ଜଗନ୍ନାଥଙ୍କର ପାଣ୍ଡିତ୍ୟ ଚତୁର୍ଦ୍ଦିଗରେ ବ୍ୟାପ୍ତ ହେଲା । ସେ ଅତ୍ୟନ୍ତ ରୂପବାନ୍ ଥିଲେ ଓ ପବିତ୍ର ଏକୋଦ୍ଦିଷ୍ଟ ଶମ୍ଭୁକର ଭରଦ୍ୱାଜ ବଂଶରେ ଜାତ ହୋଇଥିଲେ । ତେଣୁ ତାଙ୍କୁ ପୁରନ୍ଦର ବୋଲି ମଧ ଲୋକେ ଡାକୁଥିଲେ ।
>
> ନୀଳାମ୍ବର ଚକ୍ରବର୍ତ୍ତୀ ଜଗନ୍ନାଥଙ୍କର ରୂପ, ବିଦ୍ୟା ଓ କୁଳୀନତ୍ୱ ଦେଖି ନିଜ ଜ୍ୟେଷ୍ଠା କନ୍ୟା ଶଚୀ ସହିତ ତାଙ୍କର ବିବାହ ସମ୍ପନ୍ନ କଲେ । ଜଗନ୍ନାଥଙ୍କ ଔରସରେ ଶଚୀ ଗର୍ଭରୁ ଆଠଗୋଟି କନ୍ୟା ଜାତ ହୋଇ ନଷ୍ଟ ହେଲେ । ପରେ ବହୁଯତ୍ନରେ ଗୋଟିଏ ପୁତ୍ର ହେଲା । ନାମ ଦେଲେ ବିଶ୍ୱରୂପ, ଅତି ସୁଲକ୍ଷଣ ।
>
> ବିଶ୍ୱରୂପଙ୍କୁ ଆଠବର୍ଷ ହେଲାବେଳେ ପିତାମାତାଙ୍କ ଦର୍ଶନ ପାଇଁ ଜଗନ୍ନାଥ ସପରିବାର ନବଦ୍ୱୀପ ତ୍ୟାଗକଲେ । ଜଗନ୍ନାଥଙ୍କ ପିତୃଗୃହରେ ଶଚୀଦେବୀଙ୍କ ଗର୍ଭ ହେଲା ୧୪୦୬ ସାଲ ମାଘ ମାସରେ । ଜଗନ୍ନାଥଙ୍କ ଜନନୀ ଶୋଭାଦେବୀ ସ୍ୱପ୍ନ ଦେଖିଲେ ଯେ ଜଣେ ମହାପୁରୁଷ ଆସି ତାଙ୍କୁ କହୁଛନ୍ତି, "ସ୍ୱୟଂ ଭଗବାନ୍ ତୁମ୍ଭର ପୁତ୍ରବଧୂ ଗର୍ଭରେ ବିରାଜମାନ-ତୁମ୍ଭେ ଶୀଘ୍ର ପୁତ୍ର ଓ ପୁତ୍ରବଧୂଙ୍କୁ ନବଦ୍ୱୀପକୁ ପଠାଇଦିଅ ।" ଶୋଭାଦେବୀ ତୁରନ୍ତ ପୁତ୍ରକୁ ସପରିବାର ନବଦ୍ୱୀପକୁ ପଠାଇ ଦେଲେ । ୧୪୦୭

ସାଲ୍ ଫାଲ୍ଗୁନ ପୂର୍ଣ୍ଣମୀ ସିଂହରାଶି ପୂର୍ବା-ଫାଲ୍‌ଗୁନୀ ନକ୍ଷତ୍ରରେ ଗର୍ଭାରମ୍ଭର ତ୍ରୟୋଦଶ ମାସପରେ ଶଚୀଦେବୀଙ୍କର ଗୋଟିଏ ପୁତ୍ର ଜାତ ହେଲେ- କାଞ୍ଚନ କାନ୍ତି ପରି ଶରୀରର ବର୍ଣ୍ଣ, ସେଦିନ ତ ଚନ୍ଦ୍ର ଗ୍ରହଣ ହୋଇଥିଲା । ମନେହେଲା ନିଷ୍କଳଙ୍କ ଚନ୍ଦ୍ରର ଉଦୟ ହେତୁ ବିଧାତା ସକଳଙ୍କ ଚନ୍ଦ୍ରକୁ ଗୋପ୍ୟ କରିଦେଲେ । ଚାରିଆଡ଼େ ହରି ହରି ଶବ୍ଦ ଉଚ୍ଛୁଳି ଉଠିଲା । ଏହି ପୁତ୍ରର ନାମ ହେଲା ବିଶ୍ୱମ୍ଭର । ଶଚୀଦେବୀ କିନ୍ତୁ ବରାବର ନିମାଇଁ ବୋଲି ଡାକୁଥିଲେ ।"('ପ୍ରେମସିନ୍ଧୁ'– ଅପ୍ରକାଶିତ ପାଣ୍ଡୁଲିପି, ପୃ.୧-୨)

**(୫) ଅସଲ ରାମାୟଣ : (ମହାକାବ୍ୟ)**

ରାମାୟଣର କଥାବସ୍ତୁକୁ ନେଇ ସେ ଖଣ୍ଡେ ମହାକାବ୍ୟ ରଚନା କରିଛନ୍ତି ଓ ତାହାର ନାମକରଣ କରିଛନ୍ତି "ଅସଲ ରାମାୟଣ" । ଏହାର ସର୍ଗ ସଂଖ୍ୟା = ୪୧ ଓ ମୋଟ ପଦସଂଖ୍ୟା = ୨୪୪୮ । ସମଗ୍ର କାବ୍ୟଟି ପୁଣି "ଚତୁର୍ଦ୍ଦାଶକ୍ଷର ଛନ୍ଦ"ରେ ରଚିତ । ଯେତେଦୂର ମନେହୁଏ ଏହା ହେଉଛି ସ୍ୱାଧୀନତା ପୂର୍ବବର୍ତ୍ତୀ ରଚନା । କିନ୍ତୁ କେଜାଣି କାହିଁକି ଏଭଳି ଖଣ୍ଡେ ଉଚ୍ଚ ଧରଣର କାବ୍ୟ ଲେଖି ଶଶିବାବୁ ପ୍ରକାଶ କରିବାକୁ ନୀରବ ରହିଗଲେ, ଭାବିବାକୁ ଗଲେ ଆଶ୍ଚର୍ଯ୍ୟ ଚକିତ ହେବାକୁ ପଡ଼େ । ସମଗ୍ର କାବ୍ୟଟିର ଆଲୋଚନା କରିବା ମଧ୍ୟ ଏଠାରେ ସମ୍ଭବ ନୁହେଁ । ଏହା ପ୍ରକାଶିତ ହେଲେ ସାହିତ୍ୟରେ ଗୋଟିଏ ବଡ଼ ଧରଣର ଅଭାବ ପୂରଣ ହେବ ।

**(୬) ଓଡ଼ିଆ ତୁଳସୀ ରାମାୟଣ : (ଅସମ୍ପୂର୍ଣ୍ଣ ଅନୁବାଦ କାବ୍ୟ)**

ଓଡ଼ିଆ ଭାଷାରେ ତୁଳସୀ ରାମାୟଣର ପ୍ରାଚୀନରୁ ପ୍ରାଚୀନତମ ଓଡ଼ିଆ ଅନୁବାଦ ସଂପର୍କରେ କିଛି କୁହାଯାଇ ପାରିବ ନାହିଁ । ତେବେ ସେ ଦିଗରେ ପଶ୍ଚିମ ଓଡ଼ିଶାର ଯେଉଁ ବରପୁତ୍ରମାନେ କିଛି କାମ ଆରମ୍ଭ କରିଥିଲେ ସେମାନଙ୍କ ମଧ୍ୟରେ ଅଛନ୍ତି ସ୍ୱଭାବକବି ଗଙ୍ଗାଧର ମେହେର (କିୟଦଂଶ), କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ଏବଂ ଶଶିବାବୁ । ସ୍ୱପ୍ନେଶ୍ୱର ଦାଶଙ୍କ ଅନୂଦିତ "ତୁଳସୀ ରାମାୟଣ" ଗ୍ରନ୍ଥ ଖଣ୍ଡିକ ୧୯୨୪ ମସିହାରେ ଧରାକୋଟ ରାଜା ଶ୍ରୀ ମଦନମୋହନ ସିଂହଦେବଙ୍କ ସଂପୂର୍ଣ୍ଣ ଆର୍ଥିକ ଆନୁକୂଲ୍ୟରେ ପ୍ରକାଶିତ । ବର୍ତ୍ତମାନ ସୁଦ୍ଧା ଶଶିବାବୁଙ୍କ ଅନୂଦିତ "ତୁଳସୀ ରାମାୟଣ" ଗ୍ରନ୍ଥ ଖଣ୍ଡିକ ପାଣ୍ଡୁଲିପି ଅବସ୍ଥାରେ ପଡ଼ି ରହିଛି ।

**(୭) ବନ୍ଦୀର ଆତ୍ମକଥା : (ଇଂରାଜୀ ଅନୁବାଦ)**

ଶିକ୍ଷକ ଜୀବନର ମଧ୍ୟଭାଗରେ ସେ ଗଙ୍ଗାଧର ଓ ଗୋପବନ୍ଧୁଙ୍କ ଜୀବନୀ ଓ ସାହିତ୍ୟ ତ୍ୟାଗ ଓ ଆଦର୍ଶ ଉପରେ ବହୁଦିଗରୁ ବହୁଭାବରେ ପ୍ରଭାବିତ ହୋଇଥିବାର ଆମ ପାଖରେ ତାହାର ଯଥେଷ୍ଟ ପ୍ରମାଣ ରହିଛି । ଗୋପବନ୍ଧୁଙ୍କ ସମଗ୍ର ରଚନାବଳୀ ମଧ୍ୟରେ "ବନ୍ଦୀର ଆତ୍ମକଥା" କାବ୍ୟଟି ଶଶିବାବୁଙ୍କୁ ବହୁଭାବରେ ଜୀବନ ଦର୍ଶନ ଦେଇଛି, ମୁଗ୍ଧ ଓ ପ୍ରୀତ

କରିଛି ଏଥିରେ ସନ୍ଦେହ ନାହିଁ । ତେଣୁ ଶଶିବାବୁ ଉତ୍ସାହ ସହକାରେ ସାହିତ୍ୟ ଓ ସଂସ୍କୃତି-ପ୍ରିୟ ହୋଇ "ବନ୍ଦୀର ଆତ୍ମକଥା" କାବ୍ୟଟିକୁ ସଂପୂର୍ଣ୍ଣ ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି । କବି ଗୋପବନ୍ଧୁଙ୍କ "ବନ୍ଦୀର ଆତ୍ମକଥା" କାବ୍ୟ ସମ୍ବନ୍ଧରେ ସୂଚନା ଦେଇ ବିଶିଷ୍ଟ ଗବେଷକ ଦେବେନ୍ଦ୍ର କୁମାର ଦାଶ ଲେଖିଛନ୍ତି :

> "ଅସହଯୋଗ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିବାରୁ ବ୍ରିଟିଶ୍ ସରକାର ନୂତନ ଅପରାଧ ଦଣ୍ଡବିଧିର ୧୭ ଧାରା ଅନୁସାରେ ପଣ୍ଡିତ ଗୋପବନ୍ଧୁଙ୍କୁ ୧୯୨୨ ମସିହା ମେ ୩୧ ତାରିଖ ଦିନ ଗିରଫ କରାଯାଇଥିଲା ଓ ଜୁନ୍ ଛବିଶ ତାରିଖରେ ତାଙ୍କୁ ଦୁଇବର୍ଷ ସଶ୍ରମ କାରାବାସ ଆଦେଶ ହୋଇଥିଲା । ଜଣେ ରାଜନୈତିକ ବନ୍ଦୀ ଭାବରେ ତାଙ୍କୁ ହଜାରୀବାଗ ଜେଲ୍‌କୁ ନିଆଯିବା କଥା; କିନ୍ତୁ ତାଙ୍କ ବିରୁଦ୍ଧରେ କନିକା ମାନହାନି ମକଦ୍ଦମା ଚାଲିଥିବାରୁ ୧୯୨୩ ମସିହା ଜାନୁୟାରୀ ୨୩ ତାରିଖ ପର୍ଯ୍ୟନ୍ତ ତାଙ୍କୁ କଟକ ଜେଲ୍‌ରେ ରଖାଯାଇଥିଲା । ୨୪ ତାରିଖ ସନ୍ଧ୍ୟାରେ ଜେଲ୍‌ରୁ ଆସି ସବ୍ ଇନ୍‌ସ୍ପେକ୍‌ଟର୍ ନୀଳମଣି ମହାନ୍ତିଙ୍କ ଘରେ ରାତ୍ରି ଯାପନ କରି ତା'ପର ଦିନ ଟ୍ରେନ୍‌ଯୋଗେ ହଜାରିବାଗ ଯାତ୍ରା କରିଥିଲେ । ୨୭ ତାରିଖ ଅପରାହ୍ଣରେ ସେ ହଜାରିବାଗ ଜେଲ୍‌ରେ ପ୍ରବେଶ କଲେ ।"
> (ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ– ପ୍ରଥମ ସଂସ୍କରଣ–୨୦୦୩, ପୃ.୧୧୩, ଗ୍ରନ୍ଥମନ୍ଦିର, କଟକ-୨) ।

'ବନ୍ଦୀର ଆତ୍ମକଥା'ରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ଲେଖିଥିଲେ :

(୧)

"ଦେଶବାସୀ ବନ୍ଧୁ ଆତ୍ମୀୟ ସୋଦର
କାରାଦଣ୍ଡେ ମୋର ହେଲ କି କାତର ?
ଥିଲା ଏହା ଆଗୁ ଜଣାଶୁଣା କଥା,
ସେଥିପାଇଁ ତେବେ କିପାଁ ମନେ ବ୍ୟଥା ?
କାତରତା ସିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛ ଘୁଞ୍ଚା ନାହିଁ ବୀରର ଜାତକେ,
ନ ମରେ ସେ କେଭେଁ ପରାଣ ଆତଙ୍କେ ।
ଜାଣିଛି ଲାଗିଛି ଏ ଶାନ୍ତି-ସମର,
ନାହିଁ ଏଥି ତୋପ ହାତ ହତିଆର ।

ବଳ ବା ବିଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ ରଥ ହାତୀ ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲାଗିଛି ଲଢ଼ାଇ,
ଭାଙ୍ଗିବାକୁ ପଶୁବଳର ବଡ଼ାଇ,
ଛାଡ଼ି ଧନ-ଆଶା ଘରଦ୍ୱାର-ମାୟା
ଅସଙ୍ଗଶସ୍ତ୍ରେ ଯେ ସାଜିଅଛି କାୟା,
ଅହିଂସା-ବଳରେ ଯେହୁ ବଳୀୟାନ୍,
ଏ ରଣ ପ୍ରାଙ୍ଗଣେ ତା'ର ଏକା ସ୍ଥାନ ।
ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ;
ବୁଝି ଏହା ମୁହିଁ ପଶିଛି ସଂଗ୍ରାମେ,
ନାହିଁ ମୋ ବିଚାର ମାନ ଅପମାନେ ।
ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲିଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସହାଡ଼ ।
ସ୍ୱାଧୀନତା-ପଥେ ତିଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର
ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।"

(ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ–୨୦୦୩, ପୃ.୧୧୫-୧୧୬) ଶଶିବାବୁ ଏହାର ଇଂରାଜୀ ଅନୁବାଦ କରି ଲେଖିଛନ୍ତି :

"Friends, relatives and countrymen,
Do you ! for my sentence, feel pain ?
Was it not a foregone conclusion ?
Then, why this Mental agitation ?
A Coward Cowers, always, in fright;
A Hero kills or is killed in fight.
A Hero in his life neer flies;
In fear of life he neer dies.

It is the fight of peace, he knows;
It needs no military shows.
It needs not Prowess ot riches.
Elephants, Chariots of horses.
Soul force has now raised it's hood;
To cripple the brute force for good.
Those who possess no love for pelf;
No love for home, no love for self,
Who arm them with no kinds of arms,
Who know non-violence and it's charms,
Can only tread this Fighting Land;
For others it's completely banned.
Imprisonment it's first reward,
though body may be torn – afterward.
With this knowledge have I joined fight;
Fame or infamy, I care not mite.
Let my body with the dust be one;
Let countrymen on back pass on.
Let holes in swaraj-path, you guess.
Be filled up with my bones and flesh.
Let each foot on swaraj-path rise.
Higher on seeing my sacrifice;
"Let the will of God prevail"
Is my Prayer; so none bewail.

("Soliloquy of a Prisoner", page - 1-2)

ଓଡ଼ିଆ, ସମ୍ବଲପୁରୀ ଓ ଇଂରାଜୀ ଭାଷା ବ୍ୟତୀତ ଶଶିଭୂଷଣ ସେତେବେଳେ ସଂସ୍କୃତ ଭାଷାରେ ମଧ୍ୟ କେତୋଟି ବିଶୁଦ୍ଧ ସଂସ୍କୃତ କବିତା ରଚନା କରିଥିଲେ । ମାତ୍ର ସେଗୁଡ଼ିକର ପ୍ରକାଶନ ହୋଇନଥିବାରୁ ଲୋକଲୋଚନକୁ ଆସି ପାରିନାହିଁ । ପାଠକ-ପାଠିକା ମାନଙ୍କ ପାଇଁ ଶଶିଭୂଷଣଙ୍କ ଗୋଟିଏ ସଂସ୍କୃତ କବିତା ଏଠାରେ ଦିଆଗଲା :

## ଗାନ୍ଧିଦଶକଂ

ସତ୍ୟକୌମୋଦକୀହସ୍ତ ମହିଂସାଚକ୍ରଧାରିଣଂ
ସାଧୁଂ ମୋହନଦାସନ୍ତଂ ନମାମି ଶାନ୍ତିସମ୍ବଳଂ -୧-
ନମସ୍ତେ ନରରୂପାୟ କସ୍ତୁର୍ବାପ୍ରାଣସ୍ୱାମିନେ
ନମୋ ଧୀରବରେନ୍ଦ୍ରାୟ କର୍ମ୍ମଚନ୍ଦ୍ରସୁତାୟ ଚ -୨-
ନମସ୍ତେ କର୍ମ୍ମବୀରାୟ ଜ୍ଞାନଭକ୍ତିବୀରାୟ ଚ
ଶ୍ୱେତାଃଶ୍ୱେତେ ଦ୍ୱିଜାଃଦ୍ୱିଜେ ନମସ୍ତେ ସମଦର୍ଶିନେ -୩-
କାବାପୁତଳୀଚିତ୍ତଚକୋରଚନ୍ଦ୍ର !
କସ୍ତୁରୀବାଇ ହୃଦୟାନ୍ତର ସିନ୍ଧୁଚନ୍ଦ୍ର !
କଂଗ୍ରେସ ଭକ୍ତ ନୃପତି ପଥଦର୍ଶିଚନ୍ଦ୍ର !
ପ୍ରସୀଦ ମୋହନ ! ଅଶାନ୍ତିତମିସ୍ରଚନ୍ଦ୍ର ! -୪-
ହେ କର୍ମ୍ମଚନ୍ଦ୍ରାତ୍ମଜ ! ଦୀନବନ୍ଧୋ !
କସ୍ତୁରୀଦେବୀରତିବାରିସିନ୍ଧୋ !
ଜନାନ୍ତରାଢ୍ୟେସ୍ତମଖଣ୍ଡଇନ୍ଦୁଃ
ହିନ୍ଦୁରିବୋପାସ୍ୟତେ ତ୍ୱାମହିନ୍ଦୁଃ -୫-
ଏହ୍ୟେହି ଦେବୀପୁତଳୀନୟନାଭିରାମ୍ !
ଏହ୍ୟେହି ବଲ୍ଲଭପଟେଲ ହୃତ୍ସୁମଦାମ !
ସତ୍ୟାଗ୍ରହିହୃଦୟମନ୍ଦିରବାସିରାମ !
ହିଂସାସୁରାନିକିନୀଛେଦନଶକ୍ତ ବାମ ! -୬-
ରାଜେନ୍ଦ୍ରାର୍ଚ୍ଚିତ ହେ ! ଜବାହରପିତଃ ! ମୀରାନ୍ତରଦ୍ୟୋତକ !
ପଟାଭିପୂଜିତାଂଘ୍ରେ ! ମଦନମୋହନ ମାଳବ୍ୟ ସ୍ୱାଶୀଷପ୍ରାପ୍ତ !
ନେହେରୁ ମୋତିଲାଲାମିତଭ୍ରମପ୍ରଧ୍ୱଂସି ! ଚିତ୍ତସେବାଙ୍ଗୀକାରି !
ଶ୍ରୁହାମେ କ୍ଷୀଣଭାଷାଂ କୁରୁ କୁରୁ କରୁଣାଂ ଦେବହେ ଚକ୍ରଧାରି ! -୭-
ରାଧାକୃଷ୍ଣବ୍ରଜେନ୍ଦ୍ର ନିର୍ଣ୍ଣିତ ତନୁ ର୍ଗୋପାଳକୃଷ୍ଣାଦୃତଃ
ସୁଭାଷାନ୍ତରଭାଃ ରବୀନ୍ଦ୍ରତିଳକାଶ୍ଳିଷ୍ଟୋ ମହାତ୍ମର୍ଷଭଃ
ନିତ୍ୟମ୍ବିଜୟ ଲକ୍ଷ୍ମୀପୂଜିତପଦଃ କାମାନ୍ତକଃ ମୋହନଃ
ସ୍ୱାତନ୍ତ୍ର୍ୟଂ ପୂର୍ଣ୍ଣମସ୍ମଭରତବିଷୟେ ସ୍ଥାପୟତ୍ୱେବତୂର୍ଣ୍ଣଂ -୮-
ସେନାପୋତତଟାବକାରିସଲିଳା ପୋଲୀସନୀଳୋତ୍ପଳା
ରଣଗ୍ରାହବତୀ କରପ୍ରବହିଣୀ ଇଂରାଜୀବେଳାକୁଳା

ଦୋମିଶାସ୍ଥାୟି ଗୌରାଙ୍ଗଘୋରମକରା ଆୟସିଏସାବର୍ତ୍ତିନୀ
ସୋତ୍ତୀର୍ଣ୍ଣା ଭାରତୀୟୈଷ୍ଟ ଶାସନନଦୀ କୈବର୍ତ୍ତକୋମୋହନଃ –୯–
ଧନ୍ୟଃ ସଃ ଗାନ୍ଧିବଂଶଃ ନିଖିଳବସୁମତୌ ଧନ୍ୟଃ ସୌରାଷ୍ଟ୍ରଦେଶଃ
ଧନ୍ୟାଗୁର୍ଜରଭୂମିରେବ କଳିଯୁଗେ ଧନ୍ୟଂ ହି ଜମ୍ବୁଦ୍ୱୀପଂ
ଦୁଷ୍କନ୍ତାତ୍ମଜଭୂସ୍ତତୋଽଧିକମପି ଧନ୍ୟା ବଚୋନାନୃତଂ
କସ୍ତୁର୍ବାଜୀବବନ୍ଧୁ ରମିତକରୁଣାବ୍ଧିର୍ମୋହନୋ ଯତ୍ର ଜାତଃ –୧୦–

ଶ୍ରୀଶଶିଭୂଷଣମିଶ୍ରଶର୍ମା

### ଶଶିଭୂଷଣ ମିଶ୍ରଙ୍କ ଗଣିତ ଓ ବିଜ୍ଞାନ ଚେତନା :

ଶଶିବାବୁ ଗଣିତ, ବିଜ୍ଞାନ ଓ ଜ୍ୟାମିତିରେ ନିଜର ଜୀବନର ଅଧିକାଂଶ ସମୟ ବିନିଯୋଗ କରିଛନ୍ତି । ଶଶିବାବୁ ପୁଣି ଜ୍ୟାମିତି ଅଂକନରେ ଏକ ନୂତନ ଧାରା ସୃଷ୍ଟି-କରି ସ୍ୱତନ୍ତ୍ର ଭାବରେ ଚିକାଗୋ ବିଶ୍ୱବିଦ୍ୟାଳୟ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ଗଣିତ ବିଭାଗକୁ ପତ୍ର ମାଧମରେ ଜଣାଇଥିଲେ । ମାତ୍ର ସେ କୌଣସି ଠାରୁ ନିଜର ପ୍ରଶ୍ନର ସନ୍ତୋଷଜନକ ଉତ୍ତର ପାଇନଥିଲେ । ପରେ ନିଜେ ପୂର୍ବରୁ ପଚାରି-ଥିବା ସେହି ପ୍ରଶ୍ନର ଉତ୍ତର ନିଜେହିଁ ବାହାର କରିଥିଲେ । ଗାଣିତିକ ସମସ୍ୟାର ଯଥାର୍ଥ ସମାଧାନ କରିଥିଲେ । ତାହା ସେତେବେଳେ ବିଶିଷ୍ଟ ବ୍ୟକ୍ତିମାନଙ୍କ ଗଭୀର ଦୃଷ୍ଟି ଆକର୍ଷଣ ପୂର୍ବକ ସମସ୍ତଙ୍କୁ ମୁଗ୍‌ଧ ଓ ଚକିତ କରିଦେଇଥିଲା । ଜ୍ୟାମିତି ସଂପର୍କରେ ଶଶିବାବୁ ଯେଉଁ ଅଂକନ ତିଆରି କରିଥିଲେ ତାହା ଏଠାରେ ଦିଆଗଲା ।

*Tri-section of any angle*
*by Trial & adjustment method*
*By :- Sri Shashibhusan Mishra Sharma. (1896-1976)*
*asst Tr, George High School, Bargarh*
*(From 1919 to 1967)*



Take any angle ∠XOY to be tri-sected. Produce YO to Z. With centre 'O' draw a semi circle having OM (any length) as radius. Let it intersect OZ and OX at K and N respectively.

Mark two points on ruler (Scale) such that the distance between the two points equals the radius of the semi circle (OM). Place the ruler in such a way that one of the two marked points lies on OZ (P) and the other point on the arc (Q) and the ruler passes through N.

Draw a line OS parallel to PN. Bisect the angle ∠XOS. Let the bisector be OT.

Now ∠YOS = ∠SOT = ∠TOX.

—— × ——

Proof :- Join OQ

Now PQ = OQ (Constructed)

∠QPO = ∠QOP = m∠A

So the ∠OQN = ∠ONQ = m∠2A [∵ OQ = ON = r]

As 'PR' and OS are parallel and intersected by YZ at P and O

∠NPO = ∠SOY = m∠A [Corresponding ∠]

Moreover both parallel lines are intersected at N and O.

So ∠QNO = ∠NOS = m∠2A [alternate angle]

∠NOS is bisected by OT

So ∠YOS = ∠SOT = ∠TOX = m∠A

Proved.

ଏ ସଂପର୍କରେ ତାଙ୍କ ପାଖକୁ ଯେଉଁ ତିନିଖଣ୍ଡ ଚିଠି ଆସିଥିଲା, ସେଗୁଡ଼ିକ ପରପୃଷ୍ଠାରେ ଅବିକଳ ଭାବରେ ଦିଆଗଲା :

(1)

**University of Chicago**

Department of Mathmatics

Dear Mishra,

Your interest in trisecting the angle should be guided by the following observations. Concerning the problem.

The classical problem requires that the constructions performed be based exclusively on the following two elementary operations : (1) Finding the straight Line through two given points. (2) Finding the circle with given centre and given radius. This is what is meant by a trisection – "by ruler and compass alone."

There are many simple ways of trisecting the angle which do not meet this requirement. Some make use of the ruler and compass in a "forbidden" manner, others use different instruments. See for example *W. Breidenbach "Die Dreiteilung des winkels". Matchematische – Physikalische Bibliothek, (2) 78. (B.G. Teubner, Leipzig and Berlin).*

Approximate trisections of good accuracy can also be obtained by means of the "allowed" Constructions.

However, it is known that most angles cannot be trisected by the "allowed" constructions. A satisfactory demonstration that the angle of 60° cannot be trisected by the "allowed" contructions can be found in E. Artin, "Galois Theory" (University of Notre Dame Publications). Breidenbach also comments on the proof of course, any argument alleged to show that an "allowed" construction trisects the 60° angle must contain an error, but such errors may be difficult to detect because of the degree of complexity reached in the construction. This Department cannot undertake to discover such errors, except on payment of suitable fees to those engaged for the purpose.

Since the problem of trisecting the angle now seems to be well understood, there is no Longer the same interest in it (either theoretical or practical) as there formerly was.

Sincerely Yours
Marshal H. stons

P.S. : we do not have any contacts not with Mr. Charles O. Hohuston and cannot inform you about his contribution. You would probably do well to your further inquiries to some of the Indian Mathematicians in Calcutta or Andhra University, (Waltair).

(2)

**The Banaras Hindu University**

**OFFICE NOTE AND ORDERS**

Subject :- Method of trisecting an angle Register

Letter No. & Date - NIL.....

From whom received – Shri Durga Prasad Mishra, Sambalpur.

Prof. V. V. Narlikar may kindly see this and send reply directly to the person concerned.

Registrar : sd/- illegible

Received on 3.7.58 3-6-58

Several methods of Trisecting an angle are known and they will be found described in *histeries of mathematics* and other Standard Literature. The trisectrix is a well known curve used for trisecting and angle.

It has been proved that the trisection of an *arbiltrary anglei* is not possible by a construction which involvee only drawing lines and circles, all other operations being exclude. It can be shown elgebrically that trisecting an angle implies selving a cubic acuation whereas only quadratic equations can be solved using the Intersections of a straight line and a circle. Step 5 is not Justifiable under the rules.

The problem is now to time M by drawing str. lines and circles and not by Adjusting a material scale so that ML. radius, the pient pand the straight line of being given. Once the point M is known the trisection is done because MLA = $Y_2$/POA as Shri Mishra has.

Dt. : 4-7-58 V.V. Narlikar

Professor & Head of the

Dept. of Mathematics
BANARAS HINDU UNIVERSITY

(3)

Dr. P. Parija
VICE-CHANCELLOR
No. vc-17167

monogram

Gram University
Phone: OFFICE 260
(RES.)18
UTKAL UNIVERSITY
CUTTACK
August 18, 1958

Dear Mishra,

I got your Letter dated 19.7.1958 in due courses.

I have consulted Dr. R. N. Mahanty, Professor and Head of the Department of Mathematics in the Ravenshaw College. I am enclosing a copy of his opinion regarding the method devised by your father. There has been a little delay as Dr. Mahanty took a little time to examine the method.

Your's Sincerely
Dr. Prana Krishna Parija
Dt. 18. 8. 58

Shri Durga Prasad Mishra
Fourth Year, Arts Student
G. M. College, Sambalpur

(True Copy)

This is a Mechanical construction done by trial and adjustment which may be use, but it is not a construction in the sense used in Hall and stevens. Hall and stevens in their school Geometry write that it is impossible to trisect any angle other than a right angle by the unmarked ruler and compasses. This is an established fact and there is no controversy about it. Mechanical constructions for trisecting any angle have been known from ancient times by the constructions of curves, The present method is by trial and adjustment and appears to be simple and new.

sd/- Ramanath Mahanty
Professor of Mathematics
17.8.58

**ଶଶିଭୂଷଣଙ୍କ ଦୁର୍ଲ୍ଲଭ ରଚନା ସଂଗ୍ରହ :**

ଶଶିବାବୁ ଥିଲେ ଯଥାର୍ଥରେ ପ୍ରତିଭା ଓ ସାଧନାର ମୁଗ୍‌ଧ ପ୍ରଶଂସକ, ଭାଷା ଓ ସାହିତ୍ୟର ଜଣେ ନୀରବ ସାଧକ । ବିଭିନ୍ନ ପୁସ୍ତକ ଉପରେ ଲେଖିଥିବା ତାଙ୍କର ଅଭିମତ ଗୁଡ଼ିକ ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ବର୍ତ୍ତମାନ ସୁଦ୍ଧା ତାଙ୍କ ଲିଖିତ କେତେକ ଅଭିମତ ଓ ଖଣ୍ଡିଏ ଚିଠି ସଂଗ୍ରହ କରାଯାଇପାରିଛି । ତା' ବାହାରେ ସାହିତ୍ୟିକ ଶଶିଭୂଷଣ ମିଶ୍ରଙ୍କୁ ସେତେବେଳେ ଯେଉଁମାନେ ପତ୍ର ଲେଖୁଥିଲେ ତାଙ୍କର କେତୋଟି ଚିଠି ମଧ୍ୟ ଏଠାରେ ଉଦ୍ଧାର କରାଗଲା । ଶଶିଭୂଷଣ ମିଶ୍ରଙ୍କ ରଚନାବଳୀର ପରବର୍ତ୍ତୀ ଗବେଷକ ମାନଙ୍କ ପାଇଁ ଏହା ସାହାଯ୍ୟ କରିବ, ଏଥିରେ ସନ୍ଦେହ ନାହିଁ ।

**(୧) କବି ଖଗେଶ୍ୱର ଶେଠଙ୍କ "ମାତା-ମହନ୍ତ" କାବ୍ୟ ଉପରେ ଅଭିମତ :**

ଶ୍ରୀମାନ୍ ଖଗେଶ୍ୱର ଶେଠଙ୍କ ନବ ରଚିତ "ମାତା-ମହନ୍ତ"ର ପାଣ୍ଡୁଲିପି ଆମୂଳଚୂଳ ପାଠକରି ଆହ୍ଲାଦିତ ହେଲି ।

କବି ଶେଠଙ୍କ ଯେପରି ଗଭୀର ପାଣ୍ଡିତ୍ୟ ଅଛି, ଅଛି ସେପରି ରଚନା କୌଶଳ । 'ମାତା-ମହନ୍ତ'ର ଭାଷା ଯେପରି ମଧୁର ଓ ସୁଶ୍ରାବ୍ୟ, ଭାବ ସେପରି ଗାମ୍ଭୀର୍ଯ୍ୟପୂର୍ଣ୍ଣ ତଥା ଜ୍ଞାନଦ୍ୟୋତକ ।

ଶେଠ ମହୋଦୟଙ୍କ ପାରିବାରିକ ଜୀବନରେ ସ୍ୱଚ୍ଛଳତା ଅଣାଯାଇ ପାରିଲେ ତାଙ୍କଠାରୁ ଉତ୍କଳ ଭାଷା ଓ ଉତ୍କଳ ଦେଶ ଅନେକ ପାଣ୍ଡିତ୍ୟପୂର୍ଣ୍ଣ ଉପଦେଶ ଭରା କାବ୍ୟ କବିତା ଲାଭ କରିପାରନ୍ତା ବୋଲି ମୋର ଦୃଢ଼ ଧାରଣା ।

ଗୀତା ହଷ୍ଟଲ୍, ବରଗଡ
ତା. ୨୦-୪-୬୧ ଖ୍ରୀଷ୍ଟାବ୍ଦ

ଇତି
ଶଶିଭୂଷଣ ମିଶ୍ର
ଶିକ୍ଷକ, ବରଗଡ଼

**(୨) ଶ୍ରୀ ଅଭିମନ୍ୟୁ ପ୍ରଧାନଙ୍କ "କର୍ମ ସ୍ୱାମୀ ପୂଜା" ପୁସ୍ତିକା ଉପରେ ଅଭିମତ :**

ମୋର ପ୍ରିୟବନ୍ଧୁ ଶ୍ରୀ ଅଭିମନ୍ୟୁ ପ୍ରଧାନଙ୍କ "କର୍ମସ୍ୱାମୀ ପୂଜା" ପୁସ୍ତିକାର ପାଣ୍ଡୁଲିପି ପ୍ରେସ୍‌ରେ ଥିଲାବେଳେ ତାହା ଦେଖିବାର ସୁବିଧା ମୋତେ ମିଳିଥିଲା । ଅଭିମନ୍ୟୁ ବାବୁ ନିଜେ ଅଯାଚିତ ଭାବରେ ମୋତେ ସେ ସୁବିଧା ଦେଇଥିଲେ । ଦେଖିଲି, ଅଭିମନ୍ୟୁବାବୁଙ୍କର ସାହିତ୍ୟସେବା ଏକ କର୍ତ୍ତବ୍ୟରେ ପରିଣତ ହୋଇଗଲାଣି । ଆଦିବାସୀମାନଙ୍କ ପ୍ରଧାନ ପର୍ବ

"କରମ୍‌ସାନୀ ପୂଜା" (କର୍ମସ୍ୱାମୀଙ୍କ ପୂଜା)ର ଉତ୍ପତ୍ତି, ବିଧି, ଫଳ ଇତ୍ୟାଦି ସମ୍ବନ୍ଧେ ଗବେଷଣା କରି ପ୍ରଧାନ ମହାଶୟ ନୂତନ ବେଶରେ ନବଯୁଗୋଚିତ ଭାଷାରେ ପୁସ୍ତିକା ଖଣ୍ଡିକ ଲେଖିଛନ୍ତି । ଏହାର ପଠନରେ ଆଦିବାସୀମାନଙ୍କ ତଥା ଅନ୍ୟମାନଙ୍କ ଧାରଣା (କରମ୍‌ସାନୀ ପୂଜା ସମ୍ବନ୍ଧେ) ବହୁ ପରିମାଣରେ ମାର୍ଜିତ ହୋଇଯିବାର ଯଥେଷ୍ଟ ସମ୍ଭାବନା ଅଛି । ମୁଁ ଆଶାକରେଁ ଶ୍ରୀ ଅଭିମନ୍ୟୁ ବାବୁ ଏହିପରି ସାହିତ୍ୟସେବା କରିବାରେ ଯେପରି କ୍ଲାନ୍ତିବୋଧ ନକରନ୍ତି ।

। ଇତି ।

ଗୀତାହୋଷ୍ଟେଲ୍ — ଶ୍ରୀ ଶଶିଭୂଷଣ ମିଶ୍ର
ତା ୧୦-୯-୧୯୬୨ — ଶିକ୍ଷକ
ଭାଦ୍ରବ ଶୁକ୍ଲ ଏକାଦଶୀ । — ବରଗଡ଼ ଜର୍ଜ ହା:ଇ: ସ୍କୁଲ, ସମ୍ବଲପୁର

**(୩) କବି ଶ୍ରୀ ରାଜାରାମ ମେହେରଙ୍କ ସମ୍ବଲପୁରୀ କାବ୍ୟଗ୍ରନ୍ଥ "ବଉଲକେରା" ସଂପର୍କରେ ଅଭିମତ :**

ଲାଉମୁଣ୍ଡା ଗ୍ରାମ ନିବାସୀ ଶ୍ରୀମାନ୍ ରାଜାରାମ ମେହେରଙ୍କୁ ଜାଣିବାର ଅବକାଶ ମୁଁ ଦୁଇ ତିନିଥର ପାଇଛି । ତାଙ୍କର ସାହିତ୍ୟପ୍ରୀତି ପ୍ରଶଂସନୀୟ । ତାଙ୍କ ରଚିତ "କିଆ କହଡ଼" ପୁସ୍ତିକା ସମ୍ବଲପୁରୀ (ପଶ୍ଚିମ ଓଡ଼ିଶାର କଥିତ ଭାଷା) ଭାଷାରେ ଲିଖିତ ଓ କଟକ 'ଧର୍ମଗ୍ରନ୍ଥ ଷ୍ଟୋର'ର ପରିଚାଳକ ଶ୍ରୀମାନ୍ ବିଦ୍ୟାଧରସାହୁଙ୍କ ଦ୍ୱାରା ପ୍ରକାଶିତ । "କିଆ କହଡ଼" ପାଠକରି ଶ୍ରୀମାନ୍ ରାଜାରାମ ବାବୁଙ୍କ ସମ୍ବଲପୁରୀ ଭାଷାରେ କବିତା ଲେଖିବାର ସାମର୍ଥ୍ୟ ଥିବାର ଅନୁଭବ କଲି । ପୁଣି ତାଙ୍କର "ବଉଲ୍‌କେରା" ପାଣ୍ଡୁଲିପି ପାଠ କରି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି ଯେ ସମ୍ବଲପୁରୀ ଭାଷାରେ ପ୍ରକୃତି ଚିତ୍ରଣ କରିବାରେ ଏବଂ ସାମାଜିକ ଦୁର୍ନୀତି ନିବାରଣ କରିବାରେ ସେ ଯଥେଷ୍ଟ ପ୍ରୟାସ କରିଛନ୍ତି । ସ୍ୱର୍ଗତ କବିବର ଗଙ୍ଗାଧର ମେହେରଙ୍କ ଆଶୀର୍ବାଦ ଲାଭକରି ମେହେର ବଂଶରେ ଅନେକ ଲେଖକ ବାହାରୁ ଥିବାର ଆଶା ଓ ଆଶ୍ୱାସନାର କଥା । ଭଗବାନ କରନ୍ତୁ, ଶ୍ରୀମାନ୍ ରାଜାରାମଙ୍କ ଲେଖନୀ ଅଧିକତର ଶକ୍ତିଶାଳୀ ହୋଇ ଓଡ଼ିଆ ସାହିତ୍ୟର ଦୀର୍ଘକାଳ ସେବା କରିବାକୁ ସମର୍ଥ ହେଉ ।

। ଇତି ।

ବରଗଡ଼ — ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା
ତା. ୨୪ ।୪ ।୬୫ — ଶିକ୍ଷକ, ବରଗଡ଼ ହାଇସ୍କୁଲ

**(୪) କବି ଶ୍ରୀ ରାଜାରାମ ମେହେରଙ୍କ "ଉତ୍ତାଳୀ"କାବ୍ୟ ଉପରେ ଅଭିମତ :**

ଶ୍ରୀମାନ୍ ରାଜାରାମ ମେହେରଙ୍କ ଲିଖିତ ପାଣ୍ଡୁଲିପି "ବଉଲ୍‌କେରା" ଏଥିପୂର୍ବରୁ ଦେଖିଥିଲି । ତାହା ଏକ ସମ୍ବଲପୁରୀ କବିତା ସଂଗ୍ରହ । ବର୍ତ୍ତମାନ "ଉତ୍ତାଳୀ" ପାଣ୍ଡୁଲିପି

ପାଇ ଆମ୍ଭୂଳଚୂଳ ପଢ଼ି ମୁଁ ଖୁସି ହେଲି। ଏହା ପ୍ରାକୃତିକ ବର୍ଣ୍ଣନାରେ ପୂର୍ଣ୍ଣ । ଲେଖିବାର ଅଭ୍ୟାସକୁ ଅନବଚ୍ଛିନ୍ନ ରଖି ପାରିଲେ ରାଜାରାମ ବାବୁଙ୍କ ଲେଖନୀ ଭବିଷ୍ୟତରେ ଶକ୍ତିଶାଳିନୀ ହେବ ବୋଲି ମୋର ମତ। ଈଶ୍ୱର କରନ୍ତୁ ସେ ଦୀର୍ଘଜୀବୀ ହୋଇ ଉତ୍କଳ ଜନନୀର ଓ ଉତ୍କଳ ଭାଷାର ସମ୍ୟକ୍ ସେବା କରିବାରେ ମନୋଯୋଗୀ ହୁଅନ୍ତୁ।

। ଇତି ।

ତା ୭ ।୫ ।୬୫ ଶଶିଭୂଷଣ ମିଶ୍ର

ଶିକ୍ଷକ, ବରଗଡ଼ ।

(୫) କବି ଶ୍ରୀ ରାଜାରାମ ମେହେରଙ୍କ "ଚଉତିଶା ଚନ୍ଦ୍ରିକା" କାବ୍ୟ ଉପରେ ମନ୍ତବ୍ୟ :

ଶ୍ରୀମାନ୍ ରାଜାରାମ ମେହେରଙ୍କ 'ଦୁଃଖ ମୋଚନ' ଜଣାଣ ଚଉତିଶା ଆମ୍ଭୂଳଚୂଳ ପାଠକରି ସନ୍ତୋଷ ଲାଭକଲି । ଏହାପୂର୍ବରୁ ଶ୍ରୀମାନ୍ ମେହେରଙ୍କ ଲିଖିତ ସମ୍ବଲପୁରୀ ଉପଭାଷାର କେତେଖଣ୍ଡ ପୁସ୍ତକ ଦେଖିଥିଲି। ସାହିତ୍ୟ ସୃଷ୍ଟି ଦିଗରେ ତାଙ୍କର ନିରବଚ୍ଛିନ୍ନ ସାଧନା ଦେଖି ମୁଁ ଅତ୍ୟନ୍ତ ମୁଗ୍ଧ। ପତ୍ର-ପତ୍ରିକାରେ ଆଧୁନିକ କବିତା ମାନ ପାଠକରି ମନରେ ବିରାଗ ଜାତ ହେଉଥିବାବେଳେ ଶ୍ରୀମାନ୍ ମେହେରଙ୍କ ଚଉତିଶାର ପାଣ୍ଡୁଲିପି ପଠନରେ ହୃଦୟରେ ବିପୁଳ ଆହ୍ଲାଦ ଜାତ ହେଲା । ମୋର ବିଶ୍ୱାସ ରାଜାରାମ ବାବୁ ଭବିଷ୍ୟତରେ ଅଧିକତର ସୁନ୍ଦର ସରସ ଭାବ-ଗର୍ଭକ ସାହିତ୍ୟସୃଷ୍ଟି କରି ଓଡ଼ିଆ ଭାଷା ଜନନୀର ସେବା କରିବାରେ ଦତ୍ତଚିତ୍ତ ହେବେ ।

। ଇତି ।

ଶ୍ରୀ ଶଶିଭୂଷଣ ମିଶ୍ରଶର୍ମା

ଅବସରପ୍ରାପ୍ତ ଶିକ୍ଷକ

ରେଭିନ୍ୟୁ କଲୋନୀ, ବରଗଡ଼

ତା ୧୩-୫-୭୩

(୬) କବି ଶ୍ରୀ ରାଜାରାମ ମେହେରଙ୍କୁ ଲିଖିତ ଏକ ଦୁର୍ଲ୍ଲଭ ପତ୍ର :

ଓଁ

ବରଗଡ଼

ଶ୍ରଦ୍ଧେୟ ରାଜାରାମ ବାବୁ, ଶୁଭାଶିଷ। ୧୪.୬.୬୫

ରେମଣ୍ଡା ନିବାସୀ ଶ୍ରୀ ଶିବନାରାୟଣ ଶତପଥୀ କୋବିଦ, ଆମ୍ଭମାନଙ୍କର ସହଯୋଗ ଓ ପରାମର୍ଶ ଉପରେ ନିର୍ଭର କରି ସମ୍ବଲପୁର ଜିଲ୍ଲାର ମୁଖପତ୍ର ସ୍ୱରୂପ 'ମେହେର ସ୍ମୃତି' ନାମରେ ଖଣ୍ଡେ ମାସିକ ପତ୍ରିକା ବାହାର କରିବା ସ୍ଥିର କରିଛନ୍ତି– ଆଗାମୀ ଜୁଲାଇ ୧୫ ତାରିଖରୁ ପ୍ରକାଶିତ ହେବାର ସମସ୍ତ ବନ୍ଦୋବସ୍ତ କରାଯାଇଛି । ଜୁନ୍ ୩୦ ତାରିଖ ପୂର୍ବରୁ

ପଦ୍ୟ ପ୍ରବନ୍ଧ କିଛି ମୋ' ଠିକଣାରେ ପଠାଇ ବାଧିତ କରିବେ– ଶତପଥୀ ମହାଶୟ ମୋ'ଠାରୁ ଲେଖାଗୁଡ଼ିକ ନେଇ ପାରିବେ ।

ଇତି
ଆପଣଙ୍କର
ଶଶିଭୂଷଣ ମିଶ୍ର
ଶିକ୍ଷକ, ବରଗଡ଼ ।

## ଶଶିଭୂଷଣ ମିଶ୍ରଙ୍କ ନିକଟକୁ ଆସିଥିବା ସାହିତ୍ୟିକ ପତ୍ରାବଳୀ :

### (୧) କବିପୁତ୍ର ଭଗବାନ ମେହେରଙ୍କ ପତ୍ର :

ବରପାଲି
ତା ୧୨ ।୧ ।୫୩

ପ୍ରଣତି ପୁରଃସର ସବିନୟ ନିବେଦନଂମିଦଂ–

ଶ୍ରଦ୍ଧେୟ ମହୋଦୟ, ମୁଁ ଗୋଟିଏ ବିଶେଷ କାର୍ଯ୍ୟରେ ଅନ୍ୟତ୍ର ଚାଲିଯାଇ ସେଠାରେ ପ୍ରାୟ ୧୫/୨୦ଦିନ ଅତିବାହିତ କରିଥିଲି । ସୁତରାଂ ଭବଦୀୟ କୃପାପତ୍ର ଖଣ୍ଡିକ ବହୁ ବିଳମ୍ବରେ ମୋର ହସ୍ତଗତ ହୋଇଅଛି । ଏବେ ଅଳ୍ପଦିନ ହେଲା ଗୃହକୁ ପ୍ରତ୍ୟାଗତ ହୋଇ ଥିଲେ ସୁଦ୍ଧା କେତେକ ଅନିବାର୍ଯ୍ୟ କାରଣରୁ ଉତ୍ତର ଦେଇପାରିନଥିଲି । କ୍ଷମା କରିବା ହେବେ ।

ଆପଣ ମୋର ପିତୃଦେବଙ୍କ 'ଭକ୍ତି', 'ଅମୃତମୟ', 'ମଧୁମୟ' ଓ 'ମହିମା' କବିତାର ଇଂରାଜୀ ଅନୁବାଦ କରିଥିବାର ଅବଗତ ହୋଇ ଆପଣଙ୍କୁ ସାଧୁବାଦ ପ୍ରଦାନ କରୁଅଛିଁ । ଆପଣଙ୍କ ଉଦ୍ଦେଶ୍ୟ ଅତି ମହତ୍ । ଆପଣ ସେଗୁଡ଼ିକ ଶୀଘ୍ର ପ୍ରକାଶ କରି ସୁଧୀ ସମାଜର ପ୍ରଶଂସା ଭାଜନ ହୁଅନ୍ତୁ ଏହା ମୋର ଆନ୍ତରିକ କାମନା । ଈଶ୍ୱର ଆପଣଙ୍କର ସଦୁଦ୍ୟମକୁ ସର୍ବତୋଭାବରେ ସାଫଲ୍ୟ ମଣ୍ଡିତ କରନ୍ତୁ ।

ଭବଦୀୟ-ସ୍ନେହାଧୀନ
ଭଗବାନ ମେହେର ।

### (୨) ଲକ୍ଷ୍ମୀ ନାରାୟଣ ସାହୁଙ୍କ ପତ୍ର :

ସୁଧାକର ବାବୁଙ୍କ ଘର
ଗଙ୍ଗାମନ୍ଦିର, କଟକ-୧
୪-୬-୫୯ (9 PM)

ମହାଶୟ,

ଆପଣଙ୍କ ଚିଠି ପାଇଲି । ଆଜ ଛଅ ସାତ ମାସରେ ଆମର ସାହିତ୍ୟ ଏକାଡେମୀର

ଘର ହୋଇଯିବ । ସେତେବେଳେ ପାଣ୍ଡୁଲିପି କ'ଣ ରଖିବୁ ନ ରଖିବୁ ବିଚାର କରାଯିବ । ବର୍ତ୍ତମାନ ଆମେ ଯେଉଁଠି ବସୁଛୁ ସେଠି ଆଦୌ ଜାଗା ନାହିଁ । ଅତଏବ କିଛି ସମୟ ଅପେକ୍ଷା କରନ୍ତୁ । ଇତି ।

ଆପଣଙ୍କର
ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ
ପ୍ରେସିଡେଣ୍ଟ, ସାହିତ୍ୟ ଏକାଡେମୀ
ନୂଆଁ-ରାଜଧାନୀ, ଭୁବନେଶ୍ୱର ।

**(୩) ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ପତ୍ରାବଳୀ :**

(୧)

୩୦-୭-୫୮
ନିୟୁ କ୍ୟାପିଟେଲ୍

ଶ୍ରଦ୍ଧେୟ ମହାଶୟ,

ଆପଣଙ୍କ ପତ୍ର ପାଇଛି । ଉତ୍ତର ଦେବାକୁ ଡେରି ହେଲା ବୋଲି କ୍ଷମା କରିବେ । ଆପଣ ମତେ ମନେ ରଖିଛନ୍ତି ଜାଣି ଭାରି ଖୁସି ହେଲି । 'ଅମୃତର ସନ୍ତାନ' ମୋ' ପାଖରେ ବଳକା ନାହିଁ । ତେଣୁ ପଠାଇ ପାରିଲି ନାହିଁ । ଆପଣ ସାହିତ୍ୟ ଏକାଡ଼େମୀକୁ ବହି ବା ପାଣ୍ଡୁଲିପି ପଠାଇବାକୁ ଚାହିଁଲେ ଶ୍ରୀ ଗୌରୀକୁମାର ବ୍ରହ୍ମା, ସେକ୍ରେଟେରୀ, ସାହିତ୍ୟ ଏକାଡ଼େମୀ, ୟୁନିଟ୍-୬, ନିୟୁ କ୍ୟାପିଟାଲ, ଭୁବନେଶ୍ୱର – ଏହି ଠିକଣାରେ ପଠାଇ ପାରନ୍ତି । ଆଶା କରୁଛି କୁଶଳରେ ଥିବେ । ମୋର ନମସ୍କାର ଜାଣିବେ ।

ଆପଣଙ୍କର
ସ୍ନେହାଧୀନ
ଗୋପୀନାଥ ମହାନ୍ତି

(୨)

ଗୋପୀନାଥ ମହାନ୍ତି
ୟୁନିଟ୍-୬, ଟାଇପ୍-୬, ଘରନଂ-୧୭

୨୮-୩-୧୯୫୯
ନୂଆଁ ରାଜଧାନି

ପରମ ପୂଜନୀୟ ଶଶିବାବୁ,

ମୋର ନମସ୍କାର ଜାଣିବେ । ବହୁଦିନ ମନ ଭିତରେ ଗୋଳେଇ ଗୋଳେଇ ହେଉଛି । ଆପଣଙ୍କ ସସ୍ନେହ ଉପହାର ପୁସ୍ତକ ଦୁଇଟି ପାଇ ମୁଁ ଉତ୍ତର ଦେଲି ନା ତୁନି ହୋଇ ରହିଲି, ମନେ ପଡୁନାହିଁ । ତେଣୁ ପୁଣି ଲେଖୁଛି, ଦୋଷ ହୋଇଥିଲେ ନିଜର ସ୍ୱଭାବ ସୁଲଭ ଉଦାର ଗୁଣରେ କ୍ଷମା କରିବେ । ୧୯୪୭ ଆଜିକି ୧୨ ବର୍ଷ ତଳର କଥା କିନ୍ତୁ ଆପଣଙ୍କର ସେହି ସାଧକ ମୂର୍ତ୍ତି ଅଦ୍ୟାପି ମୋ ଆଖି ଆଗରେ ରହିଛି । ଜ୍ଞାନୀ, ଜ୍ଞାନରତ, ନିରାଡ଼ମ୍ବର, ନିର୍ଭୀକ, ସହନଶୀଳତାରେ ବସୁଧା ସଦୃଶ, ସ୍ନେହୀ, ସେହିପରି

ଆପଣଙ୍କର ସେ ବ୍ୟକ୍ତିତ୍ୱ । ଛାତ୍ରମାନେ ଆପଣଙ୍କୁ ବିଚାରୁ ଥିଲେ ଏକ ଉନ୍ମେଷର ହେତୁ ବୋଲି, ଏବେ ବି. ଭାବନ୍ତି । ଆପଣଙ୍କ ସୁନା ହଜିଲା ପରେ ସେଥର ମୁଁ ଯେତେବେଳେ ଆପଣଙ୍କୁ ପଚାରିଲି ଓ ଆପଣ ନିର୍ବିକାର ଭାବରେ କହିଲେ 'ଗଲାପୁତ୍ର ବାହୁଡ଼ି ନଇଲା' ଆପଣଙ୍କର ସେ ଭଙ୍ଗୀ ଓ ତହିଁରୁ ଫୁଟି ଉଠୁଥିବା ନିର୍ଲିପ୍ତତା ଅଦ୍ୟାପି ମୋର ମନେପଡ଼େ ।

ମତେ ଡାକ୍ତର ଯୋଶି କହୁଥିଲା ଯେ ଆପଣ ବହୁତ ବହୁତ ଲେଖାଲେଖି ରଖିଛନ୍ତି । ଛପା ହୋଇନାହିଁ । 'ସଂକ୍ଷିପ୍ତ ମହାଭାରତ କଥା'ଟି ମେହେରଙ୍କ 'ଭାରତୀ ଭାବନା' ଛାନ୍ଦରେ ହୋଇଛି । 'ଶ୍ରୀଗାନ୍ଧିଗୀତା' ଗାନ୍ଧି ସମ୍ବନ୍ଧୀୟ ସାହିତ୍ୟକୁ ଏକ ନୂତନ ଅବଦାନ । ଭାଗବତର ଭାଷା ଓ ଭାବ । ମୀରାଙ୍କ ଚରିତ୍ର, ସାମ୍ୟାଦିକଙ୍କ ହୃଦୟ ପରିବର୍ତ୍ତନ, ଗାନ୍ଧିଙ୍କ ବଚନାମୃତ ଇତ୍ୟାଦିର ଅତି ମନୋରମ ଚିତ୍ରଣ ଏଥିରେ ସନ୍ନିବିଷ୍ଟ । ବହିଟି ଉପାଦେୟ ପାଠ୍ୟ ପୁସ୍ତକ ହେବା ଉଚିତ୍, ବୋଧହୁଏ ସେଥିପାଇଁ ଉଦ୍ୟମ ହୋଇନାହିଁ । ଏ ଶୈଳୀରେ ନିତ୍ୟାନନ୍ଦ ମହାପାତ୍ରଙ୍କ ରଚିତ 'ସ୍ୱରାଜ୍ୟ ଗୀତା' (ଇଂରାଜୀ ହୋମ୍‌ରୁଲ୍‌ର ଅନୁବାଦ) ଗୋଟିଏ ପ୍ରସିଦ୍ଧ ଗ୍ରନ୍ଥ । ଓଡ଼ିଶାର ସାହିତ୍ୟ ଏକାଡେମୀ ଓ ଭାରତ ସାହିତ୍ୟ ଏକାଡେମୀ ବହି ଛାପୁଛନ୍ତି । ବହି ଉପଯୁକ୍ତ ଭାବିଲେ ସେମାନେ ଛାପିବେ । ଆପଣଙ୍କର ସବୁଯାକ ପାଣ୍ଡୁଲିପି ସଂପର୍କରେ ଏକାଠି ଗୋଟିଏ ପରିଚୟ ପତ୍ର ତିଆରି କରାଇ ଛପାଇଲେ ବହି ଛାପିବା ଆଦି କାର୍ଯ୍ୟରେ ସୁବିଧା ହୋଇପାରେ । ଆପଣ ଶୁଣିଥିବେ ଯେ ଓଡ଼ିଶା ସାହିତ୍ୟ ଏକାଡେମୀ ବୁରୋମାଳର୍ କବି ଖଗେଶ୍ୱର ଶେଠଙ୍କର ଗ୍ରନ୍ଥାବଳୀ ଛାପୁଛନ୍ତି ।

ସୁବିଧା ହେଲେ ପତ୍ର ଦେବେ । ଶ୍ରୀଯୁକ୍ତ ସୋମନାଥ ପାଢ଼ୀ ଓ ଅନ୍ୟାନ୍ୟ ହିତାକାଂକ୍ଷୀଙ୍କୁ ମୋର ଭକ୍ତିପୂର୍ଣ୍ଣ ନମସ୍କାର ।

ଆପଣଙ୍କର
ସ୍ନେହାଧୀନ
ଗୋପୀନାଥ ।

**(୪) ପ୍ରଫେସର୍ ଡ଼. କୁଞ୍ଜବିହାରୀ ତ୍ରିପାଠୀଙ୍କ ପତ୍ରାବଳୀ :**

(୧)

ଓଁ ତତ୍ ସତ୍

Ravenshaw College
Cuttack

ମାନନୀୟ ମହାଶୟ, ତା ୧୩-୯-୫୮

ଭବଦୀୟ 'ଶ୍ରୀକୃଷ୍ଣଙ୍କ ଦୌତ୍ୟ' ନାମକ ପୁସ୍ତିକାର ପାଣ୍ଡୁଲିପି ଇତିପୂର୍ବରୁ ପାଇ ପଢ଼ିଅଛି । ଆସନ୍ତା ପୂଜା ଛୁଟିରେ ମୁଖବନ୍ଧ ଦେବା ଭଳି ମନ୍ତବ୍ୟଟିଏ ଲେଖି ପାଣ୍ଡୁଲିପି ସହିତ ଆପଣଙ୍କ ନିକଟକୁ ପଠାଇ ଦେବାକୁ ମନସ୍ଥ କରିଅଛି ।

ସୁଧାକର ବାବୁ ମୋତେ ଯେଉଁ ଆଞ୍ଚଳିକ ଶବ୍ଦ ତାଲିକା ଦେଇଥିଲେ (ଯେଉଁ ତାଲିକା ସଂଗ୍ରହ କରିବାରେ ଆପଣ ସାହାଯ୍ୟ କରିଥିଲେ ବୋଲି ମୁଁ ଜାଣିଲି), ତାହା ସଂଗୃହୀତ ଅନ୍ୟ ତାଲିକା ସହିତ ମିଶାଯାଇ ବର୍ତ୍ତମାନ ଅନ୍ୟ ଖାତାରେ ଲେଖାଯାଇ ସ୍ଥାନେ ସ୍ଥାନେ ଉପ ହିତ କରାହେଉଅଛି । ବିଶ୍ୱବିଦ୍ୟାଳୟ ଏ କାର୍ଯ୍ୟ ସକାଶେ ମୋ ହସ୍ତରେ କିଛି ଅର୍ଥ ମଧ୍ୟ ଦେଇଅଛନ୍ତି । ପ୍ରସ୍ତାବିତ ଗ୍ରନ୍ଥର ନାମ ହେବ "ବ୍ୟୁତ୍ପତ୍ତିମୂଳକ ଓ ତୁଳନାତ୍ମକ ସଂକ୍ଷିପ୍ତ ସମ୍ବଲପୁରୀ ଶବ୍ଦ କୋଷ" । ସମ୍ବଲପୁରୀ = ପଶ୍ଚିମ ଓଡ଼ିଆ ଉପଭାଷା । ଆପଣଙ୍କ କୃତିତ୍ୱ ମୁଁ ଏ ଗ୍ରନ୍ଥରେ ସ୍ୱୀକାର କରିବି । ସମଧିକ ସାହାଯ୍ୟ ପ୍ରାର୍ଥନୀୟ । ଇତି ।

ଭବଦୀୟ

କୁଂଜବିହାରୀ ତ୍ରିପାଠୀ ।

(୨)

Dr. K. B.Tripathi
M.A., B.L, Ph. D. (London)
Post Graduate professor
RAVENSHAW COLLEGE
CUTTACK - 3

Residential address :
Professor pada,
P.O. CHAULIAGANJ
CUTTACK-3

Date :୭-୧୧-୧୯୫୮

ସୁଲେଖକ ପଣ୍ଡିତ ଶଶିଭୂଷଣ ମିଶ୍ରଙ୍କର "ଶାନ୍ତିଦୂତ ଶ୍ରୀକୃଷ୍ଣ" ନାମକ ପଦ୍ୟମୟୀ ରଚନାଟି ପାଠକରି ଆନନ୍ଦିତ ହେଲି । ମହାଭାରତ-ଯୁଦ୍ଧ ହେବାପୂର୍ବରୁ ଏହାର ଉଭୟ-ପକ୍ଷର ତଥା ଭାରତବର୍ଷର ହିତ ସାଧନ କରି ଶ୍ରୀକୃଷ୍ଣ ଶାନ୍ତି ସ୍ଥାପନ ଚେଷ୍ଟାରେ ନିଜେ ହସ୍ତିନାକୁ ଦୂତଭାବରେ ଗମନ କରି କୌରବ ଦରବାରରେ କ'ଣ କହିଥିଲେ ଓ ଦୁର୍ଯ୍ୟୋଧନ ତାଙ୍କୁ କିପରି ପ୍ରତ୍ୟୁତ୍ତର ଦେଇଥିଲେ ତାହା କବି ଏହି ରଚନାଟିରେ ପଶ୍ଚିମ ଓଡ଼ିଶାର ଜନସାଧାରଣଙ୍କ ଭାଷାରେ ହୃଦୟସ୍ପର୍ଶୀ ଭାବରେ ସଂକ୍ଷେପରେ ପ୍ରକାଶ କରିଅଛନ୍ତି ।

ଓଡ଼ିଶାର କ୍ଷେତ୍ରଫଳ ୬୦.୧୩୬ ବର୍ଗ ମାଇଲ୍ । ଏଥିରେ ପଶ୍ଚିମ ଓଡ଼ିଆ ଉପଭାଷା (ବା ସମ୍ବଲପୁରୀ ଭାଷା) ପ୍ରାୟ ୨୪,୦୦୦ବର୍ଗମାଇଲ ପରିମିତ ଅଞ୍ଚଳରେ କଥିତ ହୁଏ । ତେଣୁ ଓଡ଼ିଶାର ଅନ୍ୟ ଅଞ୍ଚଳର ଶିକ୍ଷିତ ବ୍ୟକ୍ତିମାନେ ଏହି ଉପଭାଷା ସମ୍ବନ୍ଧରେ ଜ୍ଞାନଲାଭ କରିବା ବାଞ୍ଛନୀୟ । ଏହାଦ୍ୱାରା ଓଡ଼ିଆ ଭାଷା ସମୃଦ୍ଧତର ହେବ । ପଣ୍ଡିତ ମିଶ୍ର ଏହି ଉପଭାଷାରେ ଲେଖି ଆମ୍ଭମାନଙ୍କର ତତ୍ ସମ୍ବନ୍ଧରେ ଜ୍ଞାନର ପରିସର ବଢ଼ାଇ ଥିବାରୁ ସେ ଆମ୍ଭମାନଙ୍କର ଧନ୍ୟବାଦାର୍ହ । ମୁଁ ଏ ପୁସ୍ତିକାର ବହୁଳ ପ୍ରଚାର କାମନା କରେ ।

ପଣ୍ଡିତ ମହାଶୟଙ୍କ ରଚିତ 'ଅସଲ ରାମାୟଣ' ନାମକ ପଦ୍ୟକାବ୍ୟ ଓ 'ବାସୁଦେବ ଶ୍ରୀକୃଷ୍ଣ' ନାମକ ଗଦ୍ୟକାବ୍ୟ ଓ 'ସମ୍ବଲପୁରୀ ରସ୍ କବିତା' (ଗୀତିକାବ୍ୟ) ଓଡ଼ିଆ ସାହିତ୍ୟର ଉଚ୍ଚ ଧରଣର ରଚନା । ଏ ଗୁଡ଼ିକ ଏପର୍ଯ୍ୟନ୍ତ ଅପ୍ରକାଶିତ । ଏଗୁଡ଼ିକ ପ୍ରକାଶିତ ହେଲେ ଓଡ଼ିଆଭାଷି ମାତ୍ରେ ଲେଖକଙ୍କର ଗଭୀର କବିପ୍ରତିଭାର ପରିଚୟ ପାଇବେ । ଇତି ।

କୁଞ୍ଜବିହାରୀ ତ୍ରିପାଠୀ
ଓଡ଼ିଆ ଓ ସଂସ୍କୃତ ବିଭାଗ, ରେଭେନ୍ସା କଲେଜ

(୩)

Cuttack-3
Date: 8.11.1958

ମହାଶୟ,

ଆପଣଙ୍କର ତା ୧୧ ।୧୦ ।୫୮ ପତ୍ରରେ ସମ୍ବଲପୁରୀ ଭାଷାକୋଷ ସଂକଳନରେ ଆପଣଙ୍କର ସହାନୁଭୂତି ଓ ସାହାଯ୍ୟ ପ୍ରତିଶ୍ରୁତି ସକାଶେ ମୋର ଆନ୍ତରିକ ଧନ୍ୟବାଦ । 'ଶାନ୍ତିଦୂତ ଶ୍ରୀକୃଷ୍ଣ' ନାମକ ପାଣ୍ଡୁଲିପିଟି ମୋର ଅଭିମତ ସହିତ ପଠାଇଲି ।

ଆପଣଙ୍କର ସମ୍ବଲପୁରୀ ରସ୍‌କବିତା ଗୁଡ଼ିକ ପ୍ରକାଶିତ ହେବା ଅତୀବ ପ୍ରୟୋଜନୀୟ । ଓଡ଼ିଶାର ଲୋକ-ସାହିତ୍ୟରେ ସେ ଗୁଡ଼ିକର ସ୍ଥାନ ଖୁବ୍ ଉଚ୍ଚରେ । କେବଳ ପ୍ରତୀଚ୍ୟ ଓଡ଼ିଶାର କାହିଁକି, ସମଗ୍ର ଓଡ଼ିଶାର ଶିକ୍ଷିତମାନେ ସେଗୁଡ଼ିକୁ ଆଦର କରିବେ ଏଥିରେ ମୋର ସନ୍ଦେହ ନାହିଁ । କିନ୍ତୁ ପ୍ରତୀଚ୍ୟେତର ଶିକ୍ଷିତମାନଙ୍କର ସୁବୋଧ ହେବା ସକାଶେ ପ୍ରାମାଣିକ (Standard) ଓଡ଼ିଆରେ ସମ୍ବଲପୁରୀ ଶବ୍ଦମାନଙ୍କର ଅର୍ଥ ଦେବାକୁ ହେବ ।

ଭବଦୀୟ 'ବାସୁଦେବ ଶ୍ରୀକୃଷ୍ଣ' ଓ 'ଅସଲ୍ ରାମାୟଣ'ରେ ମାନବ ହୃଦୟର ଗଭୀର ଓ ସୂକ୍ଷ୍ମଭାବର ଚିତ୍ରଣ ଅତୀବ ହୃଦୟସ୍ପର୍ଶୀ ହୋଇଅଛି । ଆପଣଙ୍କ ରାମାୟଣ ଉତ୍କଳ ଭାରତୀଙ୍କ ଗୋଟିଏ ଅତି ମନୋହର ଅଳଙ୍କାର । ମୋର ଜଣାଥିବା ଆପଣଙ୍କ ରଚନାବଳୀ ମଧ୍ୟରେ ଏହା ଶ୍ରେଷ୍ଠ ।

ସମ୍ବଲପୁରୀ ଭାଷାକୋଷ ସକାଶେ ଆଉ କିଛି ଶବ୍ଦ ସଂଗ୍ରହ କରିପାରିଲେ ପଠାଇ ଅନୁଗୃହୀତ କରିବେ ।

ଆପଣଙ୍କର ପୂର୍ବୋକ୍ତ ଲେଖାବଳୀରୁ କେତେକ ସମ୍ବଲପୁରୀ ଶବ୍ଦ ସଂଗ୍ରହ କରିଅଛି । ଉକ୍ତ ଭାଷାକୋଷରେ ସେ ଗୁଡ଼ିକର ସ୍ଥାନ ଦେବା ସକାଶେ ଆପଣଙ୍କ ଅନୁମତି ପ୍ରଦତ୍ତ ହେଲା ବୋଲି ମୁଁ ଗ୍ରହଣ କରିବାକୁ ସାହସ କରୁଅଛି । ଏହି କୋଷର ମୁଖବନ୍ଧରେ ଆପଣଙ୍କର ନାମ ଅବଶ୍ୟ ରହିବ ।

ଇତି
ସୌଜନ୍ୟ ମୁଗ୍ଧ
କୁଞ୍ଜବିହାରୀ ତ୍ରିପାଠୀ

(୪) ଶ୍ରୀମତୀ ନଳିନୀଦେବୀ ରାଉତରାୟଙ୍କ ପତ୍ରାବଳୀ :

(୧)

କଟକ
୪ ।୬ ।୫୮

Dear Shashi babu,

କେତେଥର ଭାବିଛି ଯେ ଆପଣଙ୍କର ଏଇ ଅନୁବାଦ ଗୁଡ଼ିକ କ'ଣ କରାଯାଇ ପାରେ– କିନ୍ତୁ କୌଣସି ସିଦ୍ଧାନ୍ତରେ ପହଞ୍ଚିପାରିନି– ଆଜି ଚିଠିପାଇ ଏଇ ନୂଆ କଥାଟା ମନରେ ପଡ଼ିଲା ଯେ ଆପଣ ଜାଣନ୍ତି ତ ଆମର Orissa ରେ ଗୋଟିଏ Sahitya Acedemi ଅଛି ? ମୁଁ ଅବଶ୍ୟ ଜାଣେନା ଏମାନେ Practically କଣ କଲେଣି ଓ କଣ କରୁଛନ୍ତି–ତେବେ ଏଇ ଅନୁଷ୍ଠାନର ଜଣେ Secretary ଥାନ୍ତି । ତାଙ୍କ ନାମ ଶ୍ରୀ ରାଜକିଶୋର ରାୟ । ସେ ବୋଧହୁଏ ଭୁବନେଶ୍ୱରରେ ରହନ୍ତି । ତାଙ୍କର ଠିକଣା ସଂଗ୍ରହ କରି ତାଙ୍କ ଠାକୁ ଖଣ୍ଡେ ଚିଠି ଲେଖନ୍ତୁ । ତାଙ୍କୁ କହନ୍ତୁ ଆପଣଙ୍କର ସେ କବିତାଗୁଡ଼ିକ ବହି ଆକାରରେ ଛପେଇବାକୁ ଆପଣ ଚାହାନ୍ତି ଏବଂ ସେ ସେଥିରେ କିଛି ସାହାଯ୍ୟ ଦେଇପାରିବେ କି ? ସେ କ'ଣ ଲେଖୁଛନ୍ତି ମତେ ଆପଣ ଲେଖିବେ– ଯଦି କିଛି କରାଯାଇପାରେ ତେବେ ମୁଁ ଆପଣଙ୍କୁ କିଭାବେ Help କରାଯାଇପାରେ କହିବି । ମୋ ଦେହ ଭଲ ଅଛି । ମୁଁ ଭଲରେ ଅଛି । ନମସ୍କାର ନେବେ ।

ଇତି
ଆପଣଙ୍କର
**N. Debi**

(୨)

କଟକ
୧୭ ।୬ ।୫୮

ଶ୍ରଦ୍ଧେୟ ଶଶିବାବୁ !

ଆପଣଙ୍କର ଚିଠି ପାଇଲି । ସବୁ ବୁଝିଲି । ଆପଣ ପୁରୁଷ, ଅଭିଜ୍ଞ ପୁଣି ଶିକ୍ଷିତ; ଆଶା, ଧୈର୍ଯ୍ୟ ହରାଇବେ ନାହିଁ– ଏତିକି ଅନୁରୋଧ ମୋର । ମୋ ଜୀବନଟା ସାରା କେବଳ Struggle କରି କରି ମୁଁ କ୍ଳାନ୍ତ । ଧୈର୍ଯ୍ୟ ହରାଇ ବିପଥରେ ଯାଏଁ ବିପଦରେ ପଡ଼େଁ । ଆପଣଙ୍କର ତାହା ହେବ ନାହିଁ । ମୁଁ ସେପରି ଶିକ୍ଷିତ ନୁହେଁ ଯେ ଏ ବିଷୟରେ ସନ୍ତୋଷଜନକ ବ୍ୟବସ୍ଥା କରିପାରିବି । କୌଣସି ଜଣେ Publisher କୁ ଧରିଲେ ଛପାଛପିର ବ୍ୟବସ୍ଥା ସେ କରନ୍ତେ ଏଇଆ ହିଁ ମୋ ମନରେ ଥିଲା । ଆପଣ ପୁଣି Permianior ? କଥା କହିଲେଣି ସେ ତ ଏକ ନୂତନ Problem ଏହାର ସମାଧାନ ଯେ କିପରି ହେବ ମୁଁ ବୁଝିପାରୁନାହିଁ । Permianior ତ ନିଶ୍ଚୟ ଦରକାର । ନହେଲେ କିଛି ହୋଇପାରିବ ନାହିଁ – ଆପଣଙ୍କ ଲେଖା ପଢ଼ିବାପାଇଁ ମୋର ବିଶେଷ ଆଗ୍ରହ, କ'ଣ କରିବି । ଅନୁମତି

ଓ ପ୍ରକାଶନ ବିଷୟରେ ଜଣେ ବନ୍ଧୁଙ୍କୁ ପଚାରି ଲେଖିବି । ଏକାଡେମୀ ଯେ କ'ଣ କରେ ମୁଁ ବି ଜାଣେନା । ଶ୍ରଦ୍ଧାଭକ୍ତି ପୁଣି ନମସ୍କାର ସହ ଆଜି ଏତିକି ।

ନଳିନୀ ଦେବୀ

(୩)

19.11.58
16, contonment Road.
Cuttack-1

ପୂଜ୍ୟାଷ୍ପଦ ଶଶିବାବୁ !

ପ୍ରଣାମ ଗ୍ରହଣ କରିବେ । ଆପଣଙ୍କର ୧୦।୬।୫୮ର ଚିଠି ମୁଁ ପାଇଛି । ଚିଠି ଦେଇନି' ଦୁର୍ବ୍ୟବହାର ପାଇଁ କ୍ଷମା କରିବେ । ମୁଁ ଜାଣେ କେତେ ଉତ୍କଣ୍ଠାରେ ଚିଠି ଲେଖି ଅପେକ୍ଷା କରିଥିବେ । କିନ୍ତୁ ମୁଁ "ସଲିଳ ନ ସିଞ୍ଚି ଖାଲି ଦଣ୍ଡବତ" କରୁଛି । ସେମାନଙ୍କ ସହିତ ମୁଁ ସମାନ । କ'ଣ ଲେଖି ମୁଁ ଆପଣଙ୍କୁ ଆଶା ଦେବି । ଦୁନିଆଁରେ ଦରିଦ୍ରର ସ୍ଥାନ କାହିଁ ? ରବୀନ୍ଦ୍ରଙ୍କ ପରି ସୁନାର ଚାମଚ ପାଟିରେ ନେଇ ଜନ୍ମଗ୍ରହଣ କରିବାର ଥିଲା । ଆପଣଙ୍କ୍ ମୁଁ କ'ଣ ଲେଖିବି । କେଉଁ ପଥେ କେଉଁ Plan ଆପଣଙ୍କୁ ସାହାଯ୍ୟ କରିବ । ଅଭାଗା ଯେ ଦିଖେ ରାୟ ସାଗର ଶୁଖିଯେଖାୟ । ପଚାରିବୁଝିଲି ୨।୩ ଜଣଙ୍କୁ । ଆଶାର ଆଲୁଅ ଦେଖିଲି ନାହିଁ । ଆପଣଙ୍କ ମନରେ ହତାଶା ସୃଷ୍ଟି କରିବା ଛଡ଼ା ଆଉ କିଛି ନୁହେଁ । ମୋ ଚିଠି ଆପଣଙ୍କୁ ଦୁଃଖ ଦେବ ଏଥିରେ ସନ୍ଦେହ ନାହିଁ । କିନ୍ତୁ କଣ କରିବି କୁହନ୍ତୁ ମୋତେ । ମୋତେ ଆପଣଙ୍କର ପୁତ୍ରୀ ବା ଶୁଭାକାଂକ୍ଷୀ ଭାବରେ ଖଣ୍ଡିଏ ଚିଠି ଲେଖନ୍ତୁ । ମୁଁ ଆପଣଙ୍କଠାରୁ କୁଶଳ ଖବର ଚାହେଁ । ପ୍ରଣାମ ନେବେ ।

ବିନୟାବନତା

**N. Debi**

(୪)

କଟକ
୨୫।୨।୫୯

ପରମ ଶ୍ରଦ୍ଧାସ୍ପଦେଷୁ,

ମୋର ଅବିଚାର ହେତୁ କ୍ଷମା କରିବେ– ଚିଠିର ଉତ୍ତର ଦେଇନି । ବହୁ ଅସୁବିଧାରୁ ଘରେ ମୁଁ ଏକା, ସବୁ ବୁଝିବାକୁ ହୁଏ । ପିଲାଟିଏ ମୋର-ସେ ପଢ଼େ ମୋରି କତିରେ – ଘରକରଣା ଦେଖା, ଦେହ ଅସୁଖ, ବାହାର ଲୋକବାକ ଯିବା ଆସିବା ଭିତରେ କର୍ମ ଜଞ୍ଜାଳମନ ସବୁ ଭୁଲି ଯାଉଛି– ଆପଣଙ୍କର ଚିଠିର ଭାଷାରୁ ବୁଝେଁ ଯେ ଆପଣ ମୋର

ଉକ୍ତିଭାଜନେଷୁ– ଆପଣମାନଙ୍କ ଆଶୀର୍ବାଦରୁ ବହୁ ଜଞ୍ଜାଳ ଭିତରେ ରହିଯାଇଛି । ପଢ଼ାପଢ଼ି କରିବାପାଇଁ ସାଧାରଣତଃ କିଏ କଉଠି କ'ଣ ଲେଖିଲା ଏସବୁରେ unterot ରଖି ପଢ଼େଁ – କିଏ କେମିତି ଲେଖେ ସେଇ ଅନୁସାରେ ମନଭିତରେ ସ୍ନେହଭକ୍ତି ସେଇମାନଙ୍କ ପାଇଁ ଗଢ଼ି ଉଠେ । ଆପଣ କିପରି ଲେଖା ଗୁଡ଼ାକ ଦେଇଦେଲେ ? ତାର ଆଉ ଗୋଟେ କପି ରଖିଛନ୍ତି ତ ? ଯାହା ଦେଇଛନ୍ତି ସେଟା ପୁଣି ଆପଣଙ୍କ ହାତକୁ ଫେରି ଆସିବ ତ ? ମୁଁ ଏଠି ସେପରି କାହାରିକୁ ଚିହ୍ନି ନାହିଁ । ଦେଖିବି, ଭାବୁଛି ପଚରାପଚରି କରି ଜାଣିବି 'କିଏ ଦେଇଛନ୍ତି, କାହିଁକି ଦେଇଛନ୍ତି ଓ କଣ କାର୍ଯ୍ୟରେ ଲାଗିବ କି ଇତ୍ୟାଦି ଇତ୍ୟାଦି । ଆପଣ ବରଗଡ଼ରେ ଥାନ୍ତି ? ମୋର ସେଆଡ଼ର ଜାଗା ବିଷୟରେ ଅଭିଜ୍ଞତା ନାହିଁ । କେବେ କଟକ ଆସିଲେ ଆଗରୁ ମତେ ଲେଖିବେ । ମୋ ଘରେ ଅନ୍ତତଃ ଦୁଇଦିନ ରହିବେ–ମୋ ମନ ଅନୁସାରେ ମୋର ସୁବିଧା କିଛି ନାହିଁ । ଅସୁବିଧାକୁ ବରଣ କରିନେଇ କ୍ଷୁଣ୍ଣ ନ ହେଲେ ଆନନ୍ଦିତ ହେବି । ମଝିରେ ଖଣ୍ଡେ ଚିଠିର ଉତ୍ତର ମୁଁ ଆପଣଙ୍କର ଦେଇନାହିଁ । କ୍ଷମା କରିବେ । ଆମେ ଭଲରେ ଅଛୁଁ । ଶ୍ରଦ୍ଧା ଓ ଭକ୍ତି ଗ୍ରହଣ କରିବେ ।

ଇତି

**N. Debi**

(୫)

16, contonment Road.
Cuttack-1
Dt : 22. 10. 62

ଶ୍ରଦ୍ଧେୟ ଶଶୀବାବୁ !

ସମୟର ସୁଅ ଆଗେଇ ଯାଇଛି କିନ୍ତୁ ଆପଣଙ୍କୁ ମୁଁ ଭୁଲି ନାହିଁ । ଆପଣଙ୍କର କ'ଣ ହେଲା, ବହି ବିଷୟରେ ? କେବେ କ'ଣ କଟକ ଆସନ୍ତି ନାହିଁ ? ଯଦି କେବେ ଆସନ୍ତି ଆମର ଏଇଠାକୁ ଆସିବେ । ବହୁ ଦିନର ପୁରୁଣା ଚିଠି ଆପଣଙ୍କର ଦେଖୁଥିଲି– ଚିଠି ଭିତରେ ନୈରାଶ୍ୟର ଦୀର୍ଘଶ୍ୱାସ ଛପି ରହିଛି–ଆଗକୁ ବଢ଼ିବାର ଉଦ୍ୟମ ପଛେ ପଛେ ପଛକୁ ହଟାଇ ଦେବାର ବାତାବରଣ ଯଥେଷ୍ଟ–ତଥାପି ପଛକୁ ହଟିବା ପ୍ରଶ୍ନ ଜୀବନରେ ନ ଆସୁ ଏହାହିଁ ମୋର କାମନା– ମୁଁ ମୋ ଜୀବନରେ ଖାଲି ହାରିଛି, ଆଉ ଜୟର ସ୍ୱପ୍ନ ଦେଖିଛି–ନିଜେ ପ୍ରଶ୍ନ କରିଛି ନିଜେ ଉତ୍ତର କରିଛି–ଆଉ କପାଳକୁ ଠୁକିଛି ।

ଚିଠି ଲେଖିବେ ଓ ଠିକଣାଟା ଦେବେ । ମୋର ଶ୍ରଦ୍ଧା ଓ ଭକ୍ତି ଗ୍ରହଣ କରିବେ ।

ଇତି

ନଳିନୀ ଦେବୀ

(୬)

16, contonment Road.
Cuttack-1
Dt : 27. 2. 70

ଶ୍ରୀଯୁକ୍ତ ଶଶୀବାବୁ !

ଆପଣ ମୋର ଶ୍ରଦ୍ଧା ଓ ଶୁଭେଚ୍ଛା ଗ୍ରହଣ କରନ୍ତୁ । ମୁଁ ଭୁଲିନାହିଁ, ଆପଣ ମଧ୍ୟ ଭୁଲି ନଥିବେ । ଆଜି ଗୋଟିଏ ଅନୁରୋଧ ନେଇ ଆପଣଙ୍କ ପାଖେ ହାଜର ହେଉଛି । 'ମରୁତୀର୍ଥ' ନାମରେ ଏକ ଶୁଦ୍ଧ ସାହିତ୍ୟ ପତ୍ରିକା ମାର୍ଚ୍ଚମାସ ପ୍ରଥମ ସପ୍ତାହରେ ଆତ୍ମପ୍ରକାଶ କରିବାକୁ ଯାଉଛି । ଆପଣ ମୋତେ ସାହାଯ୍ୟ କରିବେ ନଚେତ୍ ମୋ ସ୍ୱପ୍ନ ସଫଳ ହୋଇ-ପାରିବ ନାହିଁ । ନଜରୁଲଙ୍କ ବିଷୟରେ ଆପଣ କିଛି ଲେଖା ଦିଅନ୍ତୁ । ତାଙ୍କ ଜୀବନର ଆଉ କିଛି ଛୋଟ ଛୋଟ ଘଟଣା ନେଇ ଲେଖନ୍ତୁ । ନଜରୁଲ୍ ଜୀବନର ପ୍ରତ୍ୟେକ ଘଟଣା ଯେତେ ସାମାନ୍ୟ ହେଲେ ମଧ୍ୟ ସଭିଙ୍କ ମନ ଆକର୍ଷଣ କରିବ । ମୋ ବହିରେ ଯେଉଁ ଜୀବନୀ ଅଛି ତାଠୁ ଭିନ୍ନ କରିଦେବେ । ପୋଷ୍ଟକାର୍ଡ଼ ଖଣ୍ଡେ ଲେଖିବେ । ଅନାଇ ରହିଛି । ଆଉ କେଋି ପରିଚିତ ଲେଖକଙ୍କୁ ମୋ ସହିତ ଚିହ୍ନା କରିଦେଲେ ଉପକୃତ ହେବି । ଆପଣଙ୍କ ଅପ୍ରକାଶିତ ଲେଖାଗୁଡ଼ିକ କିପରି ଅବସ୍ଥାରେ ଅଛି, ଅବସର ଜୀବନର କାର୍ଯ୍ୟକ୍ରମ ମୋତେ ଲେଖିବେ । ଘରେ କ'ଣ କରୁଛନ୍ତି ? ଆପଣଙ୍କର କୁଶଳାଦି ଜଣାଇବେ ।

ଇତି
**ନଳିନୀ ଦେବୀ ରାଉତରାୟ**

(୭)

Editor 'Marutirtha'.
16, contonment Road.
Cuttack-1
Dt : 25. 5. 70

ପୂଜ୍ୟାସ୍ପଦ ଶଶୀବାବୁ !

ବଡ଼ ଦୁଃଖିତ ଯେ କେବେ ମୋ ଚିଠି ଆପଣଙ୍କ ପାଖେ ପହଞ୍ଚିପାରେନା–ଆପଣଙ୍କ ଚିଠି ମୋ ପାଖେ ପହଞ୍ଚେ ନାହିଁ । ଏଥର ଟିକିନିଖି ସବୁ ଦେଖିବି । ଗତ ଭୁଲ୍ ଦୋଷ କ୍ଷମା କରିବେ । ପତ୍ରିକା ୨ଟି ପଠାଇଲି । ଭୁଲ୍ ଭାଲ୍ ସେଥିରେ କିଛି ଅଛି କିନ୍ତୁ ଗୋଟିଏ ହାତରେ ଯାହା କରାଯାଇପାରେ । ଆଉ ଜଣେ ହେଲେ ମତେ ଦିନରେ ୫ ମିନିଟ୍ ସାହାଯ୍ୟ ଦେବାକୁ ନାହିଁ । ପୁଅକୁ କହିଲେ ସେ ଶୁଣିବ ନାହିଁ । ଟିକେ ଚିଠିଟିଏ କାହାକୁ ଦେବାକୁ ମଧ୍ୟ ସେ ରାଜି ନୁହେଁ । ତେଣୁ ଏକ ଅସହାୟ ଜୀବନଯାପନ କରୁଛି । ପତ୍ରିକାଟିର

ପ୍ରଥମ ୨ଟି ସଂଖ୍ୟା ବାହାରିଛି, ପଠାଇଲି । ତୃତୀୟଟି ପ୍ରେସ୍‌ରେ । ହଇରାଣ ହେଉଛି– ପଇସା ନାହିଁ କାଗଜ ମଧ୍ୟ କିଣିବାକୁ । ପତ୍ରିକା ପଢ଼ି ସଂକ୍ଷିପ୍ତ ମତାମତ ଚାହେଁ ଦେବେ ।

ଯଥୋଚିତ ସମ୍ମାନ ସହ ।

**ନଳିନୀ**

(୬) ଶଶିଭୂଷଣମିଶ୍ରଙ୍କ ସୁପୁତ୍ର ଶ୍ରୀ ଦୁର୍ଗାପ୍ରସାଦ ମିଶ୍ରଙ୍କୁ କବିପୁତ୍ର ଭଗବାନ ମେହେରଙ୍କ ପତ୍ର :

ବରପାଲି
୨୫ । ୧୦ ।୫୯

ଶ୍ରଦ୍ଧେୟ ଦୁର୍ଗାପ୍ରସାଦ ବାବୁ,

ଆପଣଙ୍କର ତା ୨୦ ।୧୦ ।୫୯ର ପତ୍ର ପାଇଛି । ସମ୍ମାନନୀୟ ଶଶିବାବୁ ମୋର ପିତୃଦେବଙ୍କର କବିତାଗୁଡ଼ିକର ଇଂରାଜୀ ଅନୁବାଦ କରିବାରେ ଉଦ୍ୟମୀ ଥିବାର ବଡ଼ ସୌଭାଗ୍ୟର ବିଷୟ । ସେ 'ଜ୍ୟେଷ୍ଠ ଜାତିର ଅପକର୍ମର ପରିଣାମ'ର ଇଂରାଜୀ ଅନୁବାଦ କରିପାରନ୍ତି ।

ଆପଣ କବିଙ୍କର ବ୍ଲକ୍ (ଫଟୋ) ଚାହିଁଛନ୍ତି; କିନ୍ତୁ ମୋ ନିକଟରେ ତାଙ୍କର କୌଣସି ବ୍ଲକ୍ ନାହିଁ । ସବୁ ପ୍ରେସ୍‌ମାନଙ୍କରେ ରହିଯାଇଛି । ଆପଣ ଚାହିଁଲେ 'ଉତ୍କଳ-ସାହିତ୍ୟ' ପ୍ରେସ୍‌ରୁ କବିଙ୍କର ଛୋଟ ଓ ବଡ଼ ଉଭୟ ବ୍ଲକ୍ ପାଇ ପାରିବେ । ତେଣୁ ସେଠାରୁ ଆଣି ଆପଣଙ୍କର କାର୍ଯ୍ୟ ସଂପନ୍ନ କରିପାରନ୍ତି । ସେସବୁ ବ୍ଲକ୍ ବହୁ ଦିନରୁ ସେହି ପ୍ରେସ୍ ଦାୟିତ୍ୱରେ ରହିଯାଇଛି । ଅନେକେ ଦରକାର ସମୟରେ ତାଙ୍କଠୁଁ ବ୍ଲକ୍ ମାଗିଆଣି ବ୍ୟବହାରରେ ଲଗାଇଥାନ୍ତି ।

ଇତି
ଆପଣଙ୍କର
ଭଗବାନ ମେହେର

(୭) ଶଶିଭୂଷଣ ମିଶ୍ରଙ୍କ ସୁପୁତ୍ର ଶ୍ରୀ ଦୁର୍ଗାପ୍ରସାଦ ମିଶ୍ରଙ୍କୁ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ପତ୍ର :

ଶ୍ରଦ୍ଧେୟ ମହାଶୟ,

ଆପଣଙ୍କ ବାପାଙ୍କୁ ମୋର ଦଣ୍ଡବତ । ଆପଣଙ୍କୁ ନମସ୍କାର । 'ସମ୍ବଲପୁରୀ ରସ୍ କବିତା'କୁ ଓଡ଼ିଶା ସାହିତ୍ୟ ଏକାଡେମୀ କର୍ତ୍ତୃକ ଛପାଇବାକୁ ଚେଷ୍ଟା କରିଥିଲି, ସମ୍ଭବ ହୋଇପାରିଲା ନାହିଁ । କିଛି ଦିନ ତଳେ ଆପଣଙ୍କଠାରୁ ଚିଠି ପାଇଥିଲି, ଉତ୍ତର ଦେଇଛି କି ନାହିଁ ମନେ ନାହିଁ, ତେଣୁ ଆଜି କୁମ୍ଭକର୍ଣ୍ଣ ପରି ନିଦରୁ ଉଠି ଏ ଚିଠି ଲେଖୁଛି ।

ଆପଣ ଖରାଛୁଟିରେ ଘରକୁ ଗଲେଣି କି, ଏ ଚିଠି ଆପଣଙ୍କ ପାଖେ ପହଞ୍ଚିବ ଜାଣିପାରୁନାହିଁ । ସମ୍ବଲପୁରୀ ବୋଲିରେ ଆପଣଙ୍କ ବାପା କବିତା ଲେଖିଲେ ତାହା ସଜୀବ ହୋଇଉଠେ । କବି Burn ମନେପଡ଼ନ୍ତି । ଯଦି ନିଜ ଚେଷ୍ଟାରେ ଛାପିଥିବେ ତେବେ ଖଣ୍ଡିଏ ବହି ପଠାଇବେ । ଯଦି ମୁଖବନ୍ଧ ଲେଖି ପଠାଇବା ଭଳି ମୋର ସୌଭାଗ୍ୟ ହେଲାଭଳି ମିଆଦ ଥିବ ତେବେ ଚିଠି ଲେଖିବାମାତ୍ରେ ପଠାଇ ଦେବି । ହାତଲେଖା ସଂକଳନଙ୍କୁ ରେଜିଷ୍ଟ୍ରି ଡାକରେ ପଠାଇଦେବି କି ?

ଦିନା କେତେ ହେଲା ମୋର ଦେହ ଭଲ ନାହିଁ, ନାନା ଧନ୍ଦାରେ ଘୂରିଘୂରି ସମୟ ପାଶୋର ହୋଇଯାଉଛି ।

କେବେ ଏଣେ ଆସିବେ ?

ଆପଣଙ୍କର ସ୍ନେହାଧୀନ
**ଗୋପୀନାଥ ମହାନ୍ତି**
ତା ୪ ।୫ ।୬୧

### ପୁରସ୍କାର ଓ ସମ୍ବର୍ଦ୍ଧନା :

ଶଶିଭୂଷଣ ଥିଲେ ଏକନିଷ୍ଠ ଓ ନୀରବ ବାଣୀସାଧକ । ତାଙ୍କର ସରଳ ଜୀବନଯାପନ ପଦ୍ଧତି, ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି, ଅମାୟିକ ଭାବ ସଂପଦ ତାଙ୍କର ସମକାଳୀନ ସମସ୍ତଙ୍କୁ ବହୁଭାବରେ ପ୍ରଭାବିତ କରିଥିଲା । ସେ ଥିଲେ ନିର୍ଲିପ୍ତ, ନିର୍ବିକାର, ନିରୂପମ, ମାୟାର ପରିଧି ମଧ୍ୟରେ ଅମାୟିକ, ଭଦ୍ର, ନମ୍ର, ଗୁଣୀ, ଶିକ୍ଷିତ ଓ ଶିକ୍ଷାବିଦ୍ । ତାଙ୍କ ଜୀବନରେ ଯଶ ଲାଭ ପାଇଁ ସେ କୌଣସି ଚେଷ୍ଟା ସୁଦ୍ଧା କରିନଥିଲେ । କିନ୍ତୁ ନିରନ୍ତର ସତ୍ୟଧର୍ମ ପଥରେ ରହି ସାଧୁତା ରକ୍ଷା କରିବା ତାଙ୍କ ଜୀବନର ପରମ ଓ ପବିତ୍ର ବ୍ରତ ଥିଲା । ମଣିଷ ମଣିଷକୁ ଆଦର କରୁ, ସମ୍ମାନ ଦେଉ, ଶ୍ରୀ ପରମେଶ୍ୱରଙ୍କଠାରେ ଏହାହିଁ ଥିଲା ତାଙ୍କର ଅନ୍ତିମ ପ୍ରାର୍ଥନା । କବି ଉମ୍ବରୁଧର ପରିଡ଼ାଙ୍କ ଭାଷାରେ କହିବାକୁ ଗଲେ :

"ଦୂରେ ଫିଙ୍ଗି ତବ ପ୍ରମତ୍ତ କଳହ
ହେ ମୋର ମାନବଭାଇ,
ମାନବକୁ ଦିଅ ମାନବ-ବେଭାର
ଆଉ ବେଶୀ ଲୋଡ଼ାନାହିଁ ।" (ମାନବଭାଇ)

ଏଭଳି ଜଣେ ଗୁଣୀ ସାହିତ୍ୟିକଙ୍କ ପରିଚୟ ଲାଭକରି ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କୁ ୧୯୭୪ ମସିହାରେ ସମ୍ମାନିତ କରିଥିଲେ । ସେହି ମାନପତ୍ରରେ ଲେଖାଥିଲା :

**ଓଡ଼ିଶା ସାହିତ୍ୟ ଏକାଡେମୀ**
ଭୁବନେଶ୍ୱର

ମାନନୀୟ **ଶ୍ରୀଯୁକ୍ତ ଶଶିଭୂଷଣ** ମିଶ୍ର

ମହୋଦୟ,

ଓଡ଼ିଆ ସାହିତ୍ୟକୁ ଆପଣଙ୍କର ଦାନ ଅବିସ୍ମରଣୀୟ ।

କବି ଏବଂ ନାଟ୍ୟକାର ଭାବରେ ଆପଣଙ୍କର କୃତିତ୍ୱ ଅଭିନନ୍ଦୀୟ ।

ଦୀର୍ଘକାଳ ଧରି ନିରବଚ୍ଛିନ୍ନ ଭାବରେ ଆପଣ ଓଡ଼ିଆ ସାହିତ୍ୟର ସେବାରେ ନିଜକୁ ନିୟୋଜିତ କରି ଆସି ଅଛନ୍ତି ।

ଆଜି ଏହି ଶୁଭ ଅବସରରେ 'ଓଡ଼ିଶା ସାହିତ୍ୟ ଏକାଡ଼େମୀ' ଆପଣଙ୍କ ସାହିତ୍ୟିକ କୃତିତ୍ୱକୁ ଅଭିନନ୍ଦିତ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

ଯଦୁନାଥ ଦାସ ମହାପାତ୍ର
**ସଭାପତି**

ମନୋରଞ୍ଜନ ଦାସ
**ସଂପାଦକ**

ତା ୩।୫।୭୪

ଶଶିବାବୁଙ୍କ ସହିତ ଅନ୍ୟ ଯେଉଁମାନେ ସମ୍ବର୍ଦ୍ଧିତ ହୋଇଥିଲେ, ସେମାନେ ହେଲେ :

୧୯୭୪

୧. ଶ୍ରୀ ଶଶିଭୂଷଣ ମିଶ୍ର
୨. ଶ୍ରୀ ଗୋଲକଚନ୍ଦ୍ର ପ୍ରଧାନ
୩. ଶ୍ରୀ ରାମଚନ୍ଦ୍ର ସ୍ୱାଇଁ
୪. ଡ. ସଦାଶିବ ମିଶ୍ର
୫. ଶ୍ରୀ ରମାରଂଜନ ମିଶ୍ର
୬. ଶ୍ରୀ ଦେବେନ୍ଦ୍ରକୁମାର ସିଂହ
୭. ଶ୍ରୀ ଲୋକନାଥ ମିଶ୍ର
୮. ଶ୍ରୀ ଅନନ୍ତରାମ ରଥ
୯. ପ୍ରଫେସର ପ୍ରହଲ୍ଲାଦ ପ୍ରଧାନ
୧୦. ଶ୍ରୀ ନିତ୍ୟାନନ୍ଦ ମହାପାତ୍ର
୧୧. ଶ୍ରୀ କେଦାରନାଥ ମହାପାତ୍ର
୧୨. ଶ୍ରୀ ବାବା କିଶୋର ଦାସ
୧୩. ଶ୍ରୀ ଅନିରୁଦ୍ଧ ଦାସ
୧୪. ପ୍ରଫେସର ଜୟକୃଷ୍ଣ ମିଶ୍ର
୧୫. ଶ୍ରୀ ରମେଶଚନ୍ଦ୍ର ପାଣିଗ୍ରାହୀ

## ବ୍ୟକ୍ତି ଚରିତ୍ର

"Meet Nurse for a Poetic Child"– ଓଡ଼ିଶା, ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତ ଧାତ୍ରୀ । ଏଇ ଉପଯୁକ୍ତ ଧାତ୍ରୀ କୋଳରେ ଶଶିଭୂଷଣଙ୍କ ତ୍ୟାଗ, ତପସ୍ୟା ଓ ସାଧନା । ତାଙ୍କ ଆବିର୍ଭାବ ହୋଇଥିଲା ୧୮୯୬ ମସିହାରେ, ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷବେଳକୁ । ବିଂଶଶତାବ୍ଦୀ ପାଇଁ କିଛିକାଳ (ଚାରିବର୍ଷ) ବାକିଥିଲା । ତେଣୁ ତାଙ୍କର ଜୀବନ ଦୁଇଟି ଶତାବ୍ଦୀର ସନ୍ଧିକ୍ଷଣରେ ହିଁ ହୋଇଥିଲା । ସାହିତ୍ୟଜ୍ଞାନ ଲାଭ କରିବାର ପିପାସା ଥିଲା ଅଦମ୍ୟ । ସାହିତ୍ୟାନୁରାଗ ତାଙ୍କ ଜୀବନର ପରମଧର୍ମ । ସାହିତ୍ୟାନୁରାଗ ହେଉଛି ଈଶ୍ୱର ଦତ୍ତ ପଦାର୍ଥ, ଈଶ୍ୱର ଦତ୍ତ କଳା ଓ ଛାୟା ତୁଲ୍ୟ ଜୀବନର ଚିର ସହଚର ବୋଲି କବି ବୁଝୁଥିଲେ । ତେଣୁ ଦିବାଲୋକରେ ବିଦ୍ୟାଳୟରେ ଛାତ୍ରମାନଙ୍କୁ ଶିକ୍ଷାଦାନ ଓ ଦୀପାଲୋକରେ ଗ୍ରନ୍ଥ ଚର୍ଚ୍ଚା କରିବା ଶଶିଭୂଷଣଙ୍କ ମହତ୍ ଜୀବନର ପ୍ରଧାନ କର୍ମଥିଲା । କବି ଶଶିଭୂଷଣ ଥିଲେ ଇଂରେଜ କବି ସେଲିଙ୍କର ସ୍କାଇଲାର୍କ ଭଳି ଉଚ୍ଚମନା, ଉଚ୍ଚ ମୂଲ୍ୟବୋଧ ଓ ଜୀବନଦର୍ଶନର ଉଦ୍‌ଘୋଷକ ଏବଂ ମାତୃଭୂମି ଓ ମାତୃଭାଷାର ନିସର୍ଗ ଉଦ୍‌ଗାତା ।

କବି ଶଶିଭୂଷଣ ଥିଲେ ଏକାନ୍ତ ସ୍ୱଳ୍ପଭାଷୀ । ନିଜର ବାଦ୍ୟ ନିଜେ ପିଟିବା ତାଙ୍କ ସାହିତ୍ୟ ଓ ସଂସ୍କୃତି ବାହାରେ । କିନ୍ତୁ କବି ତାଙ୍କର ଅଶୀବର୍ଷର ଜୀବନ ଭିତରେ ଉତ୍କଳବାସୀଙ୍କୁ ଯେଉଁଳି ଗଢ଼ିଯାଇଛନ୍ତି, ତାର ପଟାନ୍ତର କାହିଁ ? ଓଡ଼ିଆ ସାହିତ୍ୟ ଜଗତ୍‌ରେ ସେ ବିଶେଷ ଭାବରେ ଉପେକ୍ଷିତ; କିନ୍ତୁ ଉତ୍କଳର ଜନ. ମାନସରେ ନିଜର ପ୍ରତିଭା ଓ ସାଧନାରେ ବଞ୍ଚିରହିଛନ୍ତି କବି ଶଶିଭୂଷଣ । ତାଙ୍କର ରଚନାବଳୀ ନୀରସ ନୁହେଁ; ବରଂ ବୀଣାର ଝଙ୍କାର ଭଳି ତାହା ସ୍ପନ୍ଦିତ ଏବଂ ସେଗୁଡ଼ିକ ହେଉଛି ଅମୃତୋପମ ପଂକ୍ତି ।

କବି ଶଶିଭୂଷଣ ଥିଲେ ଭାରି ସାଧାସିଧା, ସହଜ-ସରଳ ମଣିଷଟିଏ । ଆଡ଼ମ୍ବରରେ ଆଦୌ ପକ୍ଷପାତୀ ନଥିଲେ । ସେ ଚାହୁଁଥିଲେ ସମଗ୍ର ଜୀବନକୁ ଶାନ୍ତ, ସରଳ ଭାବରେ କଟାଇ ଦେବାକୁ । ଏମିତିକି ତାଙ୍କଠାରେ ଭଲ ବାକ୍ସଟିଏ ବି ନ ଥିଲା । ତାଙ୍କର ମୂଲ୍ୟବାନ୍ ପାଣ୍ଡୁଲିପି ଗୁଡ଼ିକ ଜୀର୍ଣ୍ଣଶୀର୍ଣ୍ଣ କାଠ ପେଟିକାରେ ରହୁଥିଲା । ମାଟିକୁ ସେ ନିଜର ସର୍ବେସର୍ବା ମନେକରି ତାରି ଉପରେ ମସିଣା ପକାଇ ବସୁଥିଲେ । ଜିନିଷ ପତ୍ର ଜଂଜାଳ ବଢ଼ାଇବା ପାଇଁ ସେ ଆଦୌ ଚାହୁଁନଥିଲେ । ଅତଏବ କବି ଥିଲେ ନିଃସ୍ୱାର୍ଥପର, ନିରାଡ଼ମ୍ବର ସାହିତ୍ୟ ସେବକ । କୌଣସି ପ୍ରକାରର ମାନ-ସମ୍ମାନ କ୍ଷମତା, ଆତ୍ମ ବଡ଼ିମା ପ୍ରତି ସେ କେବେ ଲାଳାୟିତ ନଥିଲେ । ଯଶପ୍ରାର୍ଥୀ ହେବାପାଇଁ ତାଙ୍କର କୌଣସି ବାସନା ନଥିଲା । ସତ୍‌କର୍ମ କରିବା ହିଁ ତାଙ୍କ ଜୀବନର ପରମ ବ୍ରତ ଥିଲା । ସେ ଆଦର୍ଶ ଶିକ୍ଷକ ଓ ଜଣେ ସାହିତ୍ୟିକ ହେବା ବ୍ୟତୀତ ଅନ୍ୟ କୌଣସିଟି ହେବାପାଇଁ ଚିନ୍ତା ସୁଦ୍ଧା କରିନଥିଲେ । ତାଙ୍କର ଅଗାଧ ସାହିତ୍ୟ ଜ୍ଞାନ, ଶାସ୍ତ୍ରଜ୍ଞାନ ଓ ଉଚ୍ଚକୋଟୀର ବିଜ୍ଞାନ ଚେତନାରେ ମୁଗ୍ଧ ଓ ପ୍ରୀତ ହୋଇ ଉତ୍କଳ ତଥା ଭାରତର ଲବ୍ଧ ପ୍ରତିଷ୍ଠ ମହାନ୍‌ବ୍ୟକ୍ତି ଓ ସାହିତ୍ୟିକମାନେ

ତାଙ୍କୁ ଧନ୍ୟ ମନେ କରୁଥିଲେ ।

ବନ-ବଲ୍ଲରୀ ଅଯତ୍ନ ରୂପେ ବର୍ଦ୍ଧିତ ହୋଇଥାଏ, ତଥାପି ତାର ସେଇ ନୈସର୍ଗିକ ସୌନ୍ଦର୍ଯ୍ୟର ପଟାନ୍ତର କାହିଁ ? କବି ଓ ସାହିତ୍ୟିକ ଶଶିଭୂଷଣ ବନ-ବଲ୍ଲରୀ ପରି ସମ୍ବଲପୁର (ଅଧୁନା ବରଗଡ଼) ଜିଲ୍ଲାର ଏକ ଅଖ୍ୟାତ, ଏକ ଅଜ୍ଞାତ କ୍ଷୁଦ୍ର ପଲ୍ଲୀରେ ବର୍ଦ୍ଧିତ ହୋଇଥିଲେ; କିନ୍ତୁ ଓଡ଼ିଆ ଭାଷା ଓ ସାହିତ୍ୟର ଚରମ ସୌଭାଗ୍ୟ ଫଳରେ ତାଙ୍କର ପ୍ରତିଭା-କୁସୁମ ଅଦିନରେ, ଅସମୟରେ ବା ଅବେଳରେ ଝଡ଼ି ପଡ଼ିନାହିଁ । ଲାଞ୍ଛିତ ଓ ଅବହେଳିତର ଶତଶତ ବଜ୍ରାଘାତରେ ତାହା ଧ୍ୱଂସ ନହୋଇ ବରଂ ତାର ସୌରଭ ଚୌଦିଗେ ଛୁଟାଇ ଜନ-ମନ ହରଣ କରି ନେଉଛି ।

## କରୁଣ ମହାପ୍ରୟାଣ

ଶଶିବାବୁଙ୍କ କରୁଣ ମହା-ପ୍ରୟାଣ ହୁଏ ବରଗଡ଼ସ୍ଥିତ ତାଙ୍କ ବାସଭବନରେ ତା. ୫ । ୬ । ୧୯୭୬ ମସିହା, ଶନିବାର ରାତ୍ରି ସମୟରେ । ଫଳରେ ଉତ୍କଳ ଭାରତୀ ତାଙ୍କର ଜଣେ ସୁଯୋଗ୍ୟ ବରପୁତ୍ରଙ୍କୁ ହରାଇଲେ । କବି ଗଙ୍ଗାଧର ଲେଖିଛନ୍ତି:

"ଜନମିଲେ ଦିନେ ଅଛି ଅବଶ୍ୟ ମରଣ,
ଅମର ଯେ ଲୋକେ ତାଙ୍କୁ କରନ୍ତି ସ୍ମରଣ !"

ସାହିତ୍ୟିକ ଶଶିଭୂଷଣ ମିଶ୍ରଶର୍ମା (ବୁଢ଼ାମାଷ୍ଟ୍ରେ)ଙ୍କୁ ସମଗ୍ର ଉତ୍କଳବାସୀ ଅବଶ୍ୟ ସ୍ମରଣ କରିବେ ତାଙ୍କର ଅମ୍ଳାନ କାବ୍ୟ କୀର୍ତ୍ତି ପାଇଁ । ଜଣେ ବିଶିଷ୍ଟ ଇଂରେଜ କବିଙ୍କ ଭାଷାରେ କହିବାକୁ ଗଲେ :

"ସମର ପ୍ରାଙ୍ଗଣରେ ସୈନିକର ସାଧନା ଓ ଆତ୍ମାହୂତି ଅପେକ୍ଷା ଶିଳ୍ପୀ, ସ୍ରଷ୍ଟା ଓ କବିର ଆତ୍ମ-ଆବିଷ୍କାର ସାଧନ-ଗୌରବ କିଛି ଊଣା ନୁହେଁ, ବରଂ ମହତ୍ତର ଓ ମହା ମହିମାରେ ମହିମାନ୍ୱିତ ।"

ଏହି ବାଣୀପୁତ୍ର, ଏହି ଗଦ୍ୟ-କବି, ଏହି ଅକୁତୋଭୟ ମଣିଷ ସାହିତ୍ୟିକ ଶଶିଭୂଷଣ ମିଶ୍ର ଶର୍ମା (ବୁଢ଼ାମାଷ୍ଟ୍ରେ) ଆମ ଦେଶ ଓ ଜାତିର, ଭାଷା ଓ ସାହିତ୍ୟର ବାର ବାର ଚିର-ନମସ୍ୟ ।

## ପରିଶିଷ୍ଟ—୧

### ✓ ଶଶିଭୂଷଣ ମିଶ୍ରଙ୍କ ସଂକ୍ଷିପ୍ତ ଜୀବନୀ

୧ । ୧୮୬୯ : ଶଶିଭୂଷଣ ମିଶ୍ରଙ୍କ ପିତା ପଣ୍ଡିତ ଶ୍ରୀ ହରିହର ମିଶ୍ରଶର୍ମାଙ୍କ ଜନ୍ମ (ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ) ।

୨ । ତା ୨୫.୩.୧୮୯୬ : ବୁଧବାର ଦିନ ଶଶିଭୂଷଣ ମିଶ୍ରଙ୍କ ଆବିର୍ଭାବ । (ଚାକିରୀ ଖାତାରେ ତା ୧.୧.୧୮୯୭ ଲେଖାଯାଇଛି ।)

୩ । ୧୯୧୦-୧୧: ବରଗଡ଼ ମାଇନର୍ ସ୍କୁଲରୁ ସପ୍ତମଶ୍ରେଣୀରେ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ।

୪ । ୧୯୧୫ : ସମ୍ବଲପୁର ଜିଲ୍ଲାସ୍କୁଲରେ ପ୍ରଥମ ସ୍ଥାନ ଅଧିକାର କରି ପ୍ରଥମଶ୍ରେଣୀରେ ମେଟ୍ରିକ୍ ପାସ୍ ।

୫ । ୧୯୧୭ : କଟକ ରେଭେନ୍‌ସା କଲେଜରୁ ଆଇ.ଏସ୍.ସି : ପ୍ରଥମଶ୍ରେଣୀରେ ଉତ୍ତୀର୍ଣ୍ଣ ।

୬ । ତା ୫.୧୧.୧୯୧୭ : ବରଗଡ଼ ଜର୍ଜହାଇସ୍କୁଲରେ ଶିକ୍ଷକତା ଆରମ୍ଭ ।

୭ । ତା ୧୩.୨.୧୯୧୮ : ବରପାଲି ମାଇନର ସ୍କୁଲରେ ଇଂରାଜୀ ଶିକ୍ଷକ ଭାବରେ ଯୋଗଦାନ ।

୮ । ତା ୬.୧୧.୧୯୧୯ : ପୁଣି ବରଗଡ଼ ହାଇସ୍କୁଲରେ ଶିକ୍ଷକ ପଦବୀରେ ଯୋଗଦାନ ।

୯ । ୧୯୨୨- ୨୩ : ଯାହା ଜଣାପଡ଼େ ଏହି ମସିହାରେ ଶଶିଭୂଷଣଙ୍କ ସହିତ ନୀଳାବତୀ ଦେବୀଙ୍କର ବିବାହ ସମ୍ପନ୍ନ ହୋଇଥିଲା ।

୧୦ । ୧୯୨୬-୨୭ : ଜ୍ୟେଷ୍ଠପୁତ୍ର ଯୋଗୀନ୍ଦ୍ର ମିଶ୍ରଙ୍କ ଜନ୍ମ ।

୧୧ । ତା. ୩୧.୧୦.୧୯୨୮ : ✓ ମିଶ୍ରଶର୍ମାଙ୍କର ମାତା 'ରୁକ୍ମିଣୀ ଦେବୀ'ଙ୍କର ସ୍ୱର୍ଗବାସ. ।

୧୨ । ୧୯୩୩-୩୪ : ଦ୍ୱିତୀୟପୁତ୍ର ସୁରୋଜ ମିଶ୍ରଙ୍କ ଜନ୍ମ ।

୧୩ । ୧୯୩୬-୩୭ : ତୃତୀୟପୁତ୍ର ଦୁର୍ଗାପ୍ରସାଦ ମିଶ୍ରଙ୍କ ଜନ୍ମ ।

୧୪ । ୧୯୩୯-୪୦ : ଏକ ଶିଶୁକନ୍ୟାର ଜନ୍ମ ।

୧୫ । ୧୯୪୦: ଜ୍ୟେଷ୍ଠପୁତ୍ର ଯୋଗୀନ୍ଦ୍ର ଓ ଶିଶୁକନ୍ୟାର କିଛିଦିନ ବ୍ୟବଧାନରେ ମୃତ୍ୟୁ ।

୧୬ । ୧୯୪୦-୪୧ :– କନିଷ୍ଠ ପୁତ୍ର ଗୌରୀ ମିଶ୍ରଙ୍କର ଜନ୍ମ ।

୧୭। ୧୯୪୨ :– ସହଧର୍ମିଣୀ 'ନୀଳାବତୀ'ଙ୍କ ପାରିବାରିକ ଦୁଃଖରେ ଅସୁସ୍ଥ ମସ୍ତକ ।

୧୮। ୧୯୫୩ :– ପିତା ପଣ୍ଡିତ ହରିହର ମିଶ୍ର ଶର୍ମାଙ୍କ ମହାପ୍ରୟାଣ । (ବୈଶାଖ କୃଷ୍ଣ ଚତୁର୍ଦ୍ଦଶୀ)

୧୯। ୧୯୫୫-୫୬ : ସହଧର୍ମିଣୀ 'ନୀଳାବତୀ'ଙ୍କ ସ୍ୱର୍ଗାବାସ ।

୨୦। ୧୯୫୬ :– ଦ୍ୱିତୀୟପୁତ୍ର 'ସରୋଜ'ଙ୍କର ସଂସାର ବିରାଗୀ ଭାବ।

୨୧। ୧୯୬୫ :– କୃତି ଶିକ୍ଷକ ହିସାବରେ ରାଜ୍ୟପାଳ ପୁରସ୍କାର ।

୨୨। ୧୬.୧୨.୧୯୬୭ – ପ୍ରାୟ ୫୦ ବର୍ଷକାଳ ଜର୍ଜହାଇସ୍କୁଲରେ ଶିକ୍ଷକତା ପରେ ଇସ୍ତାଫା ପ୍ରଦାନ (ଜର୍ଜହାଇସ୍କୁଲ ଘରୋଇ ଥିବା ସମୟରେ) ।

୨୩। ୨୭.୧୨.୧୯୬୭ – ଇସ୍ତାଫାପତ୍ର ଗ୍ରହଣ ।

୨୪। ୧୦.୦୨.୧୯୬୮ :–ନିଖିଳ ଓଡ଼ିଶା ଯୁବଲେଖକ ସମ୍ମିଳନୀର ସମ୍ବଲପୁର ଅଧିବେଶନରେ ସାହିତ୍ୟ ସାଧନା ପାଇଁ ମାନପତ୍ର ପ୍ରଦାନ ।

୨୫। ୧୨.୦୯.୧୯୭୨ :– ପ୍ରଜାତନ୍ତ୍ର ରଜତ୍‌ଜୟନ୍ତୀ ଉତ୍ସବରେ ବରଗଡ଼ ବାସନ୍ତୀ ସାହିତ୍ୟ ସଂସଦ ଦ୍ୱାରା ସମ୍ମାନୀତ (ମୁଖ୍ୟଅତିଥି ଶ୍ରୀ ହରେକୃଷ୍ଣ ମହତାବ ଓ ସଭାପତି ସାହିତ୍ୟିକ ଶ୍ରୀ ଦୟାଲାଲ ଯୋଷୀ)

୨୬। ୧୯୭୨ :– କନିଷ୍ଠପୁତ୍ର ଗୌରୀ ମିଶ୍ରଙ୍କ ଦେହାନ୍ତ ।

୨୭। ୦୩.୦୫.୧୯୭୪ :– ସାହିତ୍ୟକୃତି ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନୀତ ।

୨୮। ୧୯୭୫ :– ଦ୍ୱିତୀୟ ପୁତ୍ର ସରୋଜ ମିଶ୍ରଙ୍କ ଦେହାନ୍ତ ।

୨୯। ୧୯୭୪ :– ବରଗଡ଼ ପଞ୍ଚାୟତ କଲେଜ ଦ୍ୱାରା ମାନପତ୍ର ପ୍ରଦାନ ।

୩୦। ୦୫.୦୬.୧୯୭୬ : ନିଜ ବାସଭବନରେ ଶନିବାର ରାତ୍ର ୨ଟାରେ ମିଶ୍ର ଶର୍ମାଙ୍କ ତିରୋଧାନ ।

୩୧। ତା. ୫.୮.୨୦୦୯ :– ରାଜ୍ୟସ୍ତରୀୟ ଗଙ୍ଗାଧର ସ୍ମୃତି ସମିତି ତରଫରୁ ବରଗଡ଼ସ୍ଥିତ ଅମ୍ବାଭୋନାରେ ୯ ମିଶ୍ରଙ୍କୁ ମରଣୋତ୍ତର ଗଙ୍ଗାଧର ସମ୍ମାନ ପ୍ରଦାନ ।

ସଂଗ୍ରାହକ : ଶ୍ରୀ ପ୍ରସନ୍ନ କୁମାର ଦାଶ
(ବରଗଡ଼)

## ପରିଶିଷ୍ଟ–୨

(କ) ବୁଢ଼ାମାଷ୍ଟ୍ରେଙ୍କର କେତେକ ବ୍ୟଙ୍ଗାତ୍ମକ ତଥା ଉପଦେଶାତ୍ମକ ଉକ୍ତି :

୧ । **ପ୍ରାକ୍ତନ ଅଧ୍ୟକ୍ଷ ଡ: ନନ୍ଦିକିଶୋର ଦାଶ କହନ୍ତି :–** ଡ. ଦାଶ ଦଶମ ଶ୍ରେଣୀର (୧୯୫୪-୫୫) ଛାତ୍ର ଥିବାବେଳେ କ୍ଲାସ୍‌ରେ ଏକ ତ୍ରିଭୂଜ କଳାପଟାରେ ଅଙ୍କନ କରିବାକୁ ✓ ମିଶ୍ର କହିଲେ । ଶ୍ରୀ ଦାଶ ଚକ୍ ନେଇ କଳାପଟାରେ ଏକ ତ୍ରିଭୂଜ ଆଙ୍କି ଠିଆ ହୋଇ ରହିଲେ । ତାହା ଦେଖି ବୁଢ଼ା ମାଷ୍ଟ୍ରେ କହିଲେ "କି ହୋ ! ନନ୍ଦକିଶୋର, ଗଙ୍ଗାକୂଳରେ ଥାଇ କାହିଁକି ଶୋଷରେ ମରୁଛ । ଇଂରାଜୀରେ ୨୬ଟି ଅକ୍ଷର ଅଛି; ଓଡ଼ିଆରେ ୪୯ଟି ଅକ୍ଷର ଅଛି । ତ୍ରିଭୂଜର କିଛି ନାମ ଦିଅ ।" ତା'ପରେ ସେ (ନନ୍ଦକିଶୋର) ନାମ ଦେଲେ ।

୨ । ଜଣେ ମେଧାବୀ ଛାତ୍ର ଗଣିତ (Math)ରେ ସବୁ ପରୀକ୍ଷାରେ ଭଲ ମାର୍କ ରଖୁଥିଲେ । ଥରେ ଦଶମ ଶ୍ରେଣୀରେ ସେ କମ୍ ମାର୍କ ରଖିଲେ । ✓ ମିଶ୍ରଶର୍ମା ଗଣିତ ଶିକ୍ଷକ ଥିଲେ । ସେ ପରୀକ୍ଷାଖାତା ଦେଖାଇଲା ବେଳେ ସେହି ଛାତ୍ରକୁ ଡାକି କହିଲେ, "Don't rundown like water, come up like Fire."

୩ । ଜଣେ ଛାତ୍ର ନବମ ଶ୍ରେଣୀରେ ଗଣିତ (ଇଚ୍ଛାଧୀନ) ବିଷୟ ନେଇଥିଲେ । କୌଣସି କାରଣ ବଶତଃ ସେ ୩/୪ଟା କ୍ଲାସ୍‌ରେ ଅନୁପସ୍ଥିତ ଥିଲେ । ଯେଉଁ ଦିନ ସେ ପ୍ରଥମ କ୍ଲାସ୍ ଯୋଗଦାନ କଲେ, ସେଦିନ ✓ମିଶ୍ର ତ୍ରିକୋଣମିତି ପଢ଼ାଉଥିଲେ ଓ Sin θ Cos θ ଆଦି କହୁଥିଲେ । ଅତି ଦମ୍ଭର ସହିତ ସେହି ଛାତ୍ର ସନ୍ଦେହ ଦୂର କରିବା ସକାଶେ ପଚାରିଲା : "ଆଜ୍ଞା ! θ ଅର୍ଥ କ'ଣ ?" ଶ୍ରୀମିଶ୍ର କିଛି ସମୟ ଅପେକ୍ଷା କରି କହିଲେ " θ ର ଅର୍ଥ ନବଗୁଞ୍ଜର ବାଘ ।" ଛାତ୍ର ଜଣକ ସତ୍‌କଦମ୍ ହୋଇ ରହିଗଲେ ।

୪ । ଶ୍ରୀ ଶୁକଦେବ ଦାଶ ଜଣେ ଉଚ୍ଚକୋଟୀର ଛାତ୍ର । ସେ ୧୯୫୧ ସାଲ୍‌ରେ ମେଟ୍ରିକ୍ ପରୀକ୍ଷାରେ ଜର୍ଜହାଇସ୍କୁଲରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ସେ ଛାତ୍ରାବାସରେ ରହୁଥିଲେ । ରାତ୍ର ସମୟରେ ଏକ ଗଣିତ ନହେବାରୁ ବୁଢ଼ାମାଷ୍ଟ୍ରଙ୍କୁ (ସୁପରିଟେଣ୍ଡେଣ୍ଟ) ପଚାରିଲେ । ଦୁଇ ତିନି ଦିନ ପରେ ରାତ୍ର ୨ଟାରେ ଶୁକଦେବ ବାବୁଙ୍କୁ ଉଠାଇ ସେ ସେହି ଗଣିତ ବୁଝାଇଲେ ।

୫ । ଜର୍ଜହାଇସ୍କୁଲ ପ୍ରାଇଭେଟ୍ ମେଟ୍ରିକ୍ ପରୀକ୍ଷାର କେନ୍ଦ୍ର ଥାଏ । ଜଣେ ଛାତ୍ର ପରୀକ୍ଷା କୋଠରୀରେ କପି କରୁଥାଏ । ✓ମିଶ୍ର ନିରୀକ୍ଷକ ଥାନ୍ତି । ସେ ସେହି ଛାତ୍ରକୁ ପାଖକୁ ଡାକି ପଚାରିଲେ, "ତୁମେ କେତେ ଥର ପରୀକ୍ଷା ଦେଲଣି ?" ଛାତ୍ର କହିଲା "ଏହା ମୋର ତୃତୀୟ ଥର ।" ମାଷ୍ଟ୍ରେ କହିଲେ, "ପ୍ରଥମଥର

ପରୀକ୍ଷାରେ କପିକରି ପାସ୍ କଲ ନାହିଁ, ଦ୍ୱିତୀୟ ଥର ମଧ୍ୟ କପି କରି ପାସ୍ କଲନାହିଁ । ଏଥର ପରୀକ୍ଷାରେ କପି କରି କିପରି ପାସ୍ କରିବ ବୋଲି ଆଶା କରିଛ, ଯାଅ ।" ସେହି ଛାତ୍ର କପି ନକରି ପରୀକ୍ଷା ଦେଲା । ପରୀକ୍ଷା ଫଳ ବାହାରିବା ପରେ ନିଜ ଗାଁରୁ ଆସି ବୁଢ଼ାମାଷ୍ଟ୍ରଙ୍କୁ ପାସ୍ ଖବର ଜଣାଇଲା ।

୬ । ଗଣିତ କ୍ଲାସ୍‌ରେ ଛାତ୍ରମାନଙ୍କୁ ଗୋଟିଏ ଜ୍ୟାମିତି ଅଂକନ କରିବାକୁ ଦେଲେ । କିଛି ସମୟ ପରେ ୰ ମିଶ୍ର ସେହି ଅଙ୍କନ କଳାପଟାରେ କରିଦେଲେ । ଜଣେ ଛାତ୍ର (ଶ୍ରୀ ଭୋଳାନାଥ ପ୍ରଧାନ) ଅନ୍ୟ ଧାରାରେ ଅଂକନ କରି ମାଷ୍ଟ୍ରଙ୍କୁ ଦେଖାଇଲା ଓ ଠିକ୍ ହୋଇଛି କି ନାହିଁ ପଚାରିଲା । ମାଷ୍ଟ୍ରେ କହିଲେ, "ଅନ୍ୟ ଧାରାରେ କଲେ ଫାସୀ ହେବ ।" ମାଷ୍ଟ୍ରେପରେ କହିଲେ ଯେ ଏହାର ଅନେକ ଧାରାଅଛି, ଯେ ଯେଉଁ ଧାରାରେ କଲେ ଚଳିବ ।

୭ । ଶ୍ରୀ ନରସିଂହ ବିଶି, ପ୍ରାକ୍ତନ ପ୍ରଧାନ ଶିକ୍ଷକ କହନ୍ତି : "ବୁଢ଼ାମାଷ୍ଟ୍ରେ ଗୋଟିଏ ଗଣିତ ଛାତ୍ରମାନଙ୍କୁ କ୍ଲାସ୍‌ରେ କରିବାକୁ ଦେଲେ । କେତେ ଛାତ୍ର କଲେ ଆଉ କେତେଜଣ କଲେ ନାହିଁ । ଶ୍ରୀ ବିଶି ଗଣିତଟି ଅଧା କରି ମାଷ୍ଟ୍ରଙ୍କୁ ଦେଖାଇଲେ । ମାଷ୍ଟ୍ରେ କହିଲେ "A Half house is not a House".

୮ । ଜଣେ ଛାତ୍ର ଘରକାମ (Home Task) ବୁଢ଼ାମାଷ୍ଟ୍ରଙ୍କ ଦସ୍ତଖତ କରାଇଲା । ଅନ୍ୟ ଜଣେ ଛାତ୍ର ତାର ବିରୁଦ୍ଧରେ କହିଲା "ଆଜ୍ଞା, ଏ ପିଲା ଅନ୍ୟ ଗଣିତରେ ଆପଣଙ୍କର ଦସ୍ତଖତ କରାଇଲା ।" ବୁଢ଼ାମାଷ୍ଟ୍ରେ ଧୀରସ୍ଥିର ଭାବରେ କହିଲେ– "ଯେ ନିଜେ ନିଜକୁ ଠକେ, ତାକୁ ଆମେ କ'ଣ କହିବା !

୯ । ଡୋଳାମଣି ଦାଶ କହନ୍ତି "୧୯୫୨ ମସିହାରେ ସ୍କୁଲର ବାର୍ଷିକ ପରୀକ୍ଷା ଚାଲିଥାଏ । ଗୋଟିଏ କୋଠରୀରେ ବୁଢ଼ାମାଷ୍ଟ୍ରେ ନିରୀକ୍ଷକ ଥାନ୍ତି । ପ୍ରଧାନ ଶିକ୍ଷକ (ଶ୍ରୀ ଦେବାର୍ଚ୍ଚନ ଭୋଇ)ଙ୍କ ନୋଟିସ୍ ଅନୁଯାୟୀ କୌଣସି ପରୀକ୍ଷାର୍ଥୀ ପରୀକ୍ଷା - କୋଠରୀରୁ ପରୀକ୍ଷା ଶେଷ ହେବା ପର୍ଯ୍ୟନ୍ତ ବାହାରି ପାରିବେ ନାହିଁ । ଜଣେ ଛାତ୍ର ନିଜ ମୁହଁରୁ ଖଙ୍କାର ବାହାର କରି ବାରଣ୍ଡାକୁ ଯିବାପାଇଁ ଅନୁମତି ମାଗିବାରୁ ବୁଢ଼ାମାଷ୍ଟ୍ରେ ସିଧାସଳଖ ମନା କଲେ । ସେହି ଛାତ୍ର କୋଠରୀ ଭିତରେ ମେଞ୍ଚାଏ ଖଙ୍କାର ପକାଇଦେଲା । ଅନ୍ୟଛାତ୍ରବୃନ୍ଦ ଏହାର ପ୍ରତିବାଦରେ କାଗଜ କଲମ ଛାଡ଼ି ଠିଆ ହୋଇଗଲେ । ପ୍ରଧାନ ଶିକ୍ଷକ ତାହା ଜାଣିଲେ । ପିଅନ ଆସି ସଫାକଲା । ପରୀକ୍ଷା ପୁଣି ଚାଲିଲା । ପ୍ରଧାନ ଶିକ୍ଷକ ତାଙ୍କର ନୋଟିସ୍ ପ୍ରତ୍ୟାହାର କରିନେଲେ । ଛାତ୍ରମାନଙ୍କୁ ଶୃଙ୍ଖଳିତ କରିବାରେ ମାତ୍ରାଧିକ କଠୋରତା ବିରୁଦ୍ଧରେ ବୁଢ଼ାମାଷ୍ଟ୍ରଙ୍କର ନୀରବ ପ୍ରତିବାଦର ସ୍ୱର ଏହି ଘଟଣାରୁ ସ୍ପଷ୍ଟ ଜଣାଯାଏ ।

ସଂଗ୍ରାହକ : **ଶ୍ରୀ ପ୍ରସନ୍ନ କୁମାର ଦାଶ**

## ପରିଶିଷ୍ଟ–୩

ମିଶ୍ରଶର୍ମାଙ୍କ ଦ୍ୱାରା ଲିଖିତ କେତେକ ଶିକ୍ଷଣୀୟ ଉକ୍ତି :

୧ । ଲେଖକ ହେବାକୁ ହେଲେ ଦାୟିତ୍ୱହୀନତା ଓ ଉଚ୍ଛୃଙ୍ଖଳତାକୁ ପରିବର୍ଜନ କରିବାକୁ ହେବ । ସମାଜ ପ୍ରତି ଓ ଦେଶ ପ୍ରତି ଲେଖକର ଯେ ଗୁରୁଦାୟିତ୍ୱ ଅଛି– ତାହା ଭୁଲିଗଲେ ଚଳିବ ନାହିଁ ।

୨ । ହଜାରିଆର ପୁଅ ବଜାରିଆ ହେଉଥିବା,
ଲକ୍ଷପତି ଯକ୍ଷ ହୋଇ ବସିଥିବା,
ଓ କୋଟିପତି ରୋଟି ନ ପାଇ ମରିବାର ଉଦାହରଣ
ଏ ବିଚିତ୍ର ସଂସାରରେ ଅଭାବ ନାହିଁ ।"

୩ । ସ୍ୱର୍ଗ ବିଶୁଦ୍ଧ ସୁଖର ସ୍ଥାନ, ନର୍କ କେବଳ ଦୁଃଖର ସ୍ଥାନ କିନ୍ତୁ ମର୍ତ୍ତ୍ୟ ସୁଖଦୁଃଖର ମିଶ୍ରଣ ସ୍ଥାନ– ମର୍ତ୍ତ୍ୟବାସୀ ଆମ୍ଭେମାନେ ଉଭୟର ଭୋଗପାଇଁ ପ୍ରସ୍ତୁତ ହେବାକୁ ହେବ ।

୪ । ନିଜକାମ ଛାଡ଼ି ପରର ଦୋଷ ଖୋଜାରେ ବାଇ,
ଦେଶ ଭଲଗତି ଏଥିରେ କହତ ହେବ କାହିଁ ?

୫ । ଆଧୁନିକ ମାନବ ସମାଜ ଜଡ଼ବାଦ ଜର୍ଜରିତ; ବିଜ୍ଞାନ (ଅଜ୍ଞାନ) ପ୍ରଭାବରେ ଭଗବାନଙ୍କୁ ସ୍ଥାନଚ୍ୟୁତ କରି ଅର୍ଥର ପୂଜା କରିବାରେ ମତ୍ତ ।

୬ । ଯେ ଫୁଲ ଫୁଟି ଥରେ ବିତରେ ବାସ,
ଅନନ୍ତକାଳ ପାଇଁ ଯାଏ ବିନାଶ ।

୭ । ଗଧ ମଧ୍ୟ ଶ୍ରମ କରିଣ ପଡ଼ିଆ ଘାସ ଚରେ ।
ହାତ ଗୋଡ଼ ଥାଇ ମନୁଷ୍ୟ ଛି ଛି ଭୋକରେ ମରେ ।

୮ । Purity, Prayer & Patience–
These three lead to Essence. (28.6.58)

ସଂଗ୍ରାହକ : ଶ୍ରୀ ପ୍ରସନ୍ନ କୁମାର ଦାଶ
(ବରଗଡ଼)

## ପରିଶିଷ୍ଟ–୪

ଓଡ଼ିଶାର କେତେଜଣ ବିଶିଷ୍ଟ ବ୍ୟକ୍ତି ଏବଂ ବୁଢ଼ାମାଷ୍ଟରଙ୍କର କେତେକ ପୁରାତନ ଛାତ୍ରଙ୍କ ଲେଖାରୁ × × ×

୧ । କୁଞ୍ଜବିହାରୀ ତ୍ରିପାଠୀ
ଓଡ଼ିଆ ଓ ସଂସ୍କୃତ ବିଭାଗ
ରେଭେନ୍ସା କଲେଜ - ୦୭.୧୧.୧୯୫୮

ସୁଲେଖକ ପଣ୍ଡିତ ଶଶିଭୂଷଣ ମିଶ୍ରଙ୍କର 'ଶାନ୍ତିଦୂତ ଶ୍ରୀକୃଷ୍ଣ' ନାମକ ପଦ୍ୟମୟୀ ରଚନାଟି ପାଠକରି ଆନନ୍ଦିତ ହେଲି । × × × । ଏହି ରଚନାଟିରେ ପଶ୍ଚିମ ଓଡ଼ିଶାର ଜନ-ସାଧାରଣଙ୍କ ଭାଷାରେ ହୃଦୟସ୍ପର୍ଶୀ ଭାବରେ ସଂକ୍ଷେପରେ ପ୍ରକାଶ କରିଅଛନ୍ତି) । × × × । ପଣ୍ଡିତ ମିଶ୍ର ଏହି ଉପଭାଷାରେ ଲେଖି ଆମ୍ଭମାନଙ୍କର ତତ୍‌ସମ୍ବନ୍ଧରେ ଜ୍ଞାନର ପରିସର ବଢ଼ାଇଥିବାରୁ ସେ ଆମ୍ଭମାନଙ୍କର ଧନ୍ୟବାଦାର୍ହ । ପଣ୍ଡିତ ମହାଶୟଙ୍କ ରଚିତ 'ଅସଲ ରାମାୟଣ' ନାମକ ପଦ୍ୟକାବ୍ୟ ଓ 'ବାସୁଦେବ ଶ୍ରୀକୃଷ୍ଣ', ନାମକ ଗଦ୍ୟକାବ୍ୟ ଓଡ଼ିଆ ସାହିତ୍ୟର ଉଚ୍ଚଧରଣର ରଚନା । ଏଗୁଡ଼ିକ ଏ ପର୍ଯ୍ୟନ୍ତ ଅପ୍ରକାଶିତ । ଏ ଗୁଡ଼ିକ ପ୍ରକାଶିତ ହେଲେ ଓଡ଼ିଆଭାଷୀମାନେ ଲେଖକଙ୍କର ଗଭୀର କବି ପ୍ରତିଭାର ପରିଚୟ ପାଇବେ ।

(ରଖି ମା ପଲସାଗୁଛା କାବ୍ୟର ଭୂମିକାରୁ ଆନୀତ)

୨ । ସାଧୁଚରଣ ପଟ୍ଟନାୟକ

ଆଜୀବନ ଦୁଃଖ ଦୈନ୍ୟରେ ତାଙ୍କର ଦିନଗୁଡ଼ିକ ଅତିବାହିତ ହେଉଥିଲେ ମଧ୍ୟ ସେ ଅନ୍ୟମାନଙ୍କ ପରି ଜଞ୍ଜାଳରେ ବୁଡ଼ି ନଯାଇ ଉତ୍‌ଫୁଲ୍ଲ ଚିତ୍ତରେ ସାରା ସଂସାରର କଲ୍ୟାଣ କାମନା କରୁଥିଲେ । ସାହିତ୍ୟକ୍ଷେତ୍ରରେ (ସମ୍ବଲପୁରୀ ଭାଷାରେ ମଧ୍ୟ) ଗଳ୍ପ, କବିତା, ନାଟକ ଇତ୍ୟାଦି ତାଙ୍କର କେତେ ଯେ ଉପାଦେୟ ଲେଖା ପ୍ରକାଶ ପାଇ ପାରିନାହିଁ; ଭାବିଲେ ଦୁଃଖ ଲାଗେ । × × ×

ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଆଗେଇ ଯିବାର ସଂକଳ୍ପ କରୁଛୁ ।

(ଗଣଇସ୍ତାହାର (୦୩.୦୬.୧୯୮୩) ରୁ ଆନୀତ)

୩ । ଶ୍ରୀ ବାଇଧର ମହାନନ୍ଦିଆ
ଓଡ଼ିଆ ଅଧ୍ୟାପକ - ସମ୍ବଲପୁର
(ତା ୩୦.୧୧.୧୯୫୮)

ଆପଣଙ୍କର 'ପ୍ରେମଜାହ୍ନବୀ' (ଅପ୍ରକାଶିତ) ଉପନ୍ୟାସ ମୂଳରୁ ଶେଷଯାଏ

ପାଠକରି ସାତିଶୟ ପ୍ରୀତ ହେଲି । ସମସ୍ତ ଶ୍ରେଣୀର ପାଠକ ବର୍ଗଙ୍କୁ ଯେ ଏ ଉପନ୍ୟାସ ନିଶ୍ଚୟ ଆନନ୍ଦ ପ୍ରଦାନ କରିବ–ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

××× ଏ ଅଂଚଳର ନାରୀମାନଙ୍କର ମନଃସ୍ତାତ୍ତ୍ୱିକ ବିଶ୍ଳେଷଣ କରିବାରେ ଆପଣଙ୍କର ଅଦ୍ଭୁତ କ୍ଷମତା ଦେଖି ମୁଁ ବିସ୍ମିତ ହୋଇପଡ଼ିଛି । ସମ୍ବଲପୁରୀ ଭାଷାର ସଂଳାପ ବର୍ଣ୍ଣନାକୁ ସରସ ଏବଂ ଜୀବନ୍ତ କରିଅଛି । ଉପନ୍ୟାସର ପ୍ରଧାନ ନାୟକ ଓ ନାୟିକାକୁ ଦେଶର ଆଦର୍ଶସ୍ଥାନୀୟ·ସେବକ ଏବଂ ସେବିକା ରୂପେ କଳ୍ପନା କରି ସମ୍ବଲପୁର ଅଂଚଳରେ ଆପଣ ଯେଉଁ ଐଶ୍ୱର୍ଯ୍ୟମୟ 'ରାମରାଜ୍ୟର ସ୍ୱପ୍ନ ଦେଖିଛନ୍ତି, ତାହା ଦିନେ ଫଳବତୀ ହେଉ ।

(କବିଙ୍କର ଅପ୍ରକାଶିତ ଉପନ୍ୟାସ 'ପ୍ରେମଜାହ୍ନବୀ'ର ଅଭିମତ)

୪ । ସମାଜସେବୀ ଶ୍ରୀ ଲେଙ୍ଗୁ (ସଚ୍ଚିଦାନନ୍ଦ) ମିଶ୍ର

ବରଗଡ଼

ତା ୫.୬.୧୯୮୨ ଦିନ ଷଷ୍ଠ ଶ୍ରାଦ୍ଧ ସଭାରେ ଲେଙ୍ଗୁ ମିଶ୍ର ସଭାପତି ହିସାବରେ କହିଲେ ଯେ ସ୍ୱର୍ଗତ ମିଶ୍ର ଜଣେ ବ୍ୟକ୍ତି ନଥିଲେ, ସେଥିଲେ ଏକ ଅନୁଷ୍ଠାନ ।

(ଗଣ ଇସ୍ତାହାର– ତା.୧୧.୬.୧୯୮୨)

୫ । କବି ହେମଚନ୍ଦ୍ର ଆଚାର୍ଯ୍ୟ, ଗର୍ଭଣା

(୦୪.୨.୦୫)

××× ୰ ମିଶ୍ର ଶର୍ମାଙ୍କୁ ବିଶ୍ୱକୋଷ କହିବାରେ କିଛି ଅତ୍ୟୁକ୍ତି ବା ଅସମ୍ଭବ ମନେ ହୁଏନା । ସମ୍ବଲପୁରୀ ଭାଷାର ସେ ଥିଲେ ଜଣେ ଆଦ୍ୟକବି । ସେ ଅନେକ ବିଷୟ ପଢ଼ାଇଛନ୍ତି ଆଉ ଆମେ ଶିଖିଛୁଁ, କିନ୍ତୁ ତାଙ୍କର ବ୍ୟକ୍ତିଗତ ଜୀବନରେ ଯେଉଁ ଆଦର୍ଶ ଦେଖାଇଛନ୍ତି ତାହା ଆମେ ଜୀବନର ଶେଷ ଅବସ୍ଥାରେ ବି ଭୁଲି ପାରିବୁନାହିଁ । ସବୁଠାରୁ ବିସ୍ମୟକର ଥିଲା ତାଙ୍କର ଜୀଇଁବା କଳା । ସେ ଥିଲେ ଜଣେ ଅଟଳ ତପସ୍ୱୀ ।

(ଦୈନିକ ସମ୍ବାଦ–୦୪.୦୨.୦୫ ରୁ ଆନୀତ)

୬ । ଶ୍ରୀ ମଙ୍ଗଳୁଚରଣ ବିଶ୍ୱାଳ

ତା. ୨୨.୮.୧୯୫୯

××× ଆପଣଙ୍କ ଭଳି ଜଣେ ନିଷ୍ପାପର ସାହିତ୍ୟ-ଶିଳ୍ପୀଙ୍କ ଦ୍ୱାରା ଅବହେଳିତ ଓ ଲାଂଛିତ 'ସମ୍ବଲପୁରି ସାହିତ୍ୟ' ଉତ୍ତରୋତ୍ତର ଋଦ୍ଧିମନ୍ତ ହେଉ; ଏହାହିଁ ମୋର ଏକାନ୍ତ କାମନା ।

(ଏକ ଚିଠିରୁ ସଂଗୃହୀତ-ଚି.ନ. ୩୪୯୦)

୭ । ଶ୍ରୀ ପ୍ରକାଶ ଚନ୍ଦ୍ର ଦେବତା, ସୋହେଲା

୧୯୪୦-୪୪ରେ ବରଗଡ଼ ଜର୍ଜହାଇସ୍କୁଲରେ ମୋର ବାପା (୰ ଚତୁର୍ଭୁଜ ହୋତା) ୰ ଶଶିଭୂଷଣ ମିଶ୍ର ଶର୍ମାଙ୍କର ପ୍ରତ୍ୟକ୍ଷ ଛାତ୍ର ଥିଲେ । ତାଙ୍କଠାରୁ ୰ ମିଶ୍ରଶର୍ମାଙ୍କର

ଭୂୟସୀ ପ୍ରଶଂସା ଶୁଣିଛି । ମୁଁ ସୋହେଲା ସ୍କୁଲର ଛାତ୍ର ଥିଲି । ମେଟ୍ରିକ୍ ପଢ଼ିଲାବେଳେ ମୋର ବାପା କିଛି ମାସ ପାଇଁ ମତେ ବୁଢ଼ାମାଷ୍ଟ୍ରେଙ୍କ ତତ୍ତ୍ୱାବଧାନରେ ବରଗଡ଼ରେ ରଖିଲେ । ମୁଁ ତାଙ୍କଠାରୁ ମେଟ୍ରିକ୍ ପାଠର ସମସ୍ତ ବିଷୟର guidance ପାଇଲି । ଗଣିତ ବିଷୟ ଥିଲା ମୁଖ୍ୟ । ପ୍ରକୃତରେ କହିବାକୁ ଗଲେ ତାଙ୍କର ପ୍ରଚେଷ୍ଟାରେ ମୁଁ ମେଟ୍ରିକ୍ ପାସ୍ କରିଛି । ସେ ସବୁଦିନ ପାଇଁ ମୋର ସ୍ମରଣୀୟ ହୋଇ ରହିବେ ।

୮ । ଲିଙ୍ଗରାଜ ନାୟକ, ବରଗଡ଼

(୦୧.୦୧.୨୦୦୭)

ଚାରିବର୍ଷକାଳ ଛାତ୍ରାବାସରେ ରହି ମୁଁ ତାଙ୍କର ପ୍ରତ୍ୟକ୍ଷ ଛାତ୍ର ଥିଲି । ତାଙ୍କର ସାମୟିକ ଉପଦେଶ, ଶୁଭେଚ୍ଛା ଓ ସହାନୁଭୂତି ଲାଭ କରିବାର ସୌଭାଗ୍ୟ ଲାଭ କରିଛି । ଆମ ଭିତରୁ ଅନେକେ ତାଙ୍କୁ ସକ୍ରେଟିସ୍ ତ ଅନ୍ୟ କେତେକ ରୁଷୋ ବୋଲି ବିବେଚନା କରୁଥିଲେ । ତାଙ୍କପ୍ରତି ଆମର ଭୟ ଏବଂ ସମ୍ମାନ ସମାନ୍ତରାଳଭାବେ ରହିଥିଲା । ମୁଁ ସେହି ପ୍ରବାଦପୁରୁଷଙ୍କୁ (ବୁଢ଼ାମାଷ୍ଟ୍ରେ) ସଭକ୍ତି ପ୍ରଣାମ ଜଣାଉଛି । ତାଙ୍କ ରଚିତ କବିତା ସଂକଳନ (ପୁନରାଗଚ୍ଛ ସିଦ୍ଧାର୍ଥ) ପାଠକ ମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

('ପୁନରାଗଚ୍ଛ ସିଦ୍ଧାର୍ଥ' ପୁସ୍ତିକାର ଅଭିମତରୁ ଆନୀତ)

୯ । ଦିବ୍ୟକିଶୋର ଦେବତା, ବରଗଡ଼

ଶଶି ଭୂଷଣ ମିଶ୍ର ଶର୍ମା ବହୁ ଆୟତନ ବିଶିଷ୍ଟ ବ୍ୟକ୍ତିତ୍ୱ (Multi dimensional Personality) । ବୃତ୍ତିରେ ଶିକ୍ଷକ ଥିଲେ, ପ୍ରବୃତ୍ତିରେ, କିନ୍ତୁ ଜଣେ ସଚ୍ଚା, ପ୍ରତିବଦ୍ଧ ଲେଖକ ଥିଲେ । ଚିନ୍ତା, ଚେତନାରେ ଓସ୍ତାଦି, ଦୀପ୍ତି; ସୃଷ୍ଟି, ସର୍ଜନାରେ ମରହଟ୍ଟିଆ ପାରିଲା ପଣ । 'ପ୍ରୀତିପାତ୍ର'ର ରଚନା ଶୈଳୀ, ପଦବନ୍ଧ (Poetic diction) ଗୀତିମୟ ଆନ୍ତରିକତା (Lyrical Sincerity), ମାଧୁର୍ଯ୍ୟ (Elegance), ଭାବଛନ୍ଦ (Sense Rhythm), ଭାବ ପରିବହନଶୀଳତା (Communicability)କୁ ହୃଦୟର କଷଟି ପଥରରେ ପରୀକ୍ଷା କଲେ ବିଦ୍‌ଗଧ ପାଠକୀୟ ପ୍ରାଣରେ ଅନନ୍ୟ ସୌନ୍ଦର୍ଯ୍ୟ ବୋଧାତ୍ମକ ପୁଲକ (Aesthetic Thrill) ଜାତ କରେ । ୰ ମିଶ୍ରଙ୍କର ଅନୁବାଦିତ 'ପ୍ରୀତିପାତ୍ର' ଏକ ସରଳ, ସୁଖପାଠ୍ୟ, ସଫଳ କାବ୍ୟ ।

୧୦ । ଶ୍ରୀ ଡୋଳାମଣି ଦାଶ,

ପୁରାତନ, ବରଗଡ଼ (୨୦୧୩)

୰ ଶଶିଭୂଷଣ ମିଶ୍ର ଶର୍ମା (ବୁଢ଼ାମାଷ୍ଟ୍ରେ) ଙ୍କର ଜୀବନଯାପନ ଶୈଳୀ ଋଷିପ୍ରତିମ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କ ମୁଖରୁ କେବେହେଲେ ନିରର୍ଥକ ବଚନ ବାହାରିଥିବ ମୁଁ ଜାଣିନାହିଁ । ମୁଁ ତାଙ୍କର ଛାତ୍ରଥିଲି ଓ ଛାତ୍ରାବାସରେ ୪ବର୍ଷ ରହିଛି (୧୯୫୦-୫୪) । ମୋ ମତରେ ତାଙ୍କର ଛାଇ ବା ବାୟୁର ସଂସ୍ପର୍ଶ ମଧ୍ୟ ନିରର୍ଥକ

ନୁହେଁ । ସେହି ଗୁରୁଦେବଙ୍କୁ ମୋର ଶତ ସହସ୍ର ପ୍ରଣାମ ।

୧୦ । ଶ୍ରୀ ବୃନ୍ଦାବନ ପ୍ରଧାନ, ପୁରାତନ ଛାତ୍ର, ସୋହେଲା

ବୁଢ଼ାମାଷ୍ଟ୍ରେ (ଶଶିଭୂଷଣ ମିଶ୍ରଶର୍ମା) ମୋର ଆଦର୍ଶ ଶିକ୍ଷକମାନଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ । ତାଙ୍କର ମହତ୍‌ଗୁଣ ହେଲା ସ୍ଥିତପ୍ରଜ୍ଞତା । ଏକ ଅବ୍ୟବସ୍ଥିତ ପାରିବାରିକ ଜୀବନ ଭିତରେ ସାହିତ୍ୟ ସୃଜନ ହିଁ ଥିଲା ତାଙ୍କ ପାଇଁ ପରମଶାନ୍ତି । ଇଂରାଜୀ, ଗଣିତ, ଭୂଗୋଳ ତଥା ସଂସ୍କୃତରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଆଦ୍ୟକାଳରେ ସେ ସମ୍ବଲପୁରୀ ଭାଷାରେ କଲମ ଚଳାଇବାର ସତ୍‌ସାହସ କରିଥିଲେ । ଶେଷରେ ପ୍ରବାଦ ପୁରୁଷ ଵମିଶ୍ରଙ୍କୁ ମୋର ଶତସହସ୍ର ପ୍ରଣାମ ।

୧୨ । ମୀନକେତନ ମିଶ୍ର (ରେଙ୍ଗାଲୀ, ସମ୍ବଲପୁର)

ସ୍ୱର୍ଗତ ମିଶ୍ର ଶର୍ମା ସମ୍ବଲପୁରୀ-କୋଶଳୀ ଭାଷା ଜଗତରେ ଅମର ବିଗ୍ରହ ରୂପେ ଅବତାର ନେଇଥିଲେ । ତାଙ୍କର ଲେଖା ଜାତିକୁ ଉଦ୍‌ବୋଧନ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ଅମର କରି ରଖିବ ।

(ଏକ ଚିଠିରୁ – (୧୧.୪.୦୫) ଆନୀତ୍)

୧୩ । ଡାକ୍ତର ରମାବଲ୍ଲଭ ମିଶ୍ର, ବରଗଡ଼

ପ୍ରତିଭା ପୂଜାରେ ଏ ଜାତି ସବୁବେଳେ କାର୍ପଣ୍ୟ ଦେଖାଇ ଆସିଅଛି । ସ୍ୱର୍ଗତ ମିଶ୍ରଶର୍ମାଙ୍କ ଦେହାବସାନରେ ଆଜି ଛଅବର୍ଷ ପୁରି ଗଲେ ସୁଦ୍ଧା ତାଙ୍କର ସ୍ମୃତିରକ୍ଷା ପାଇଁ ଏ ଯାବତ୍ ବରଗଡ଼ରେ କିଛି କରାଯାଇନାହିଁ । କୌଣସି ଗୋଟିଏ ଉଚ୍ଚ ଶିକ୍ଷାନୁଷ୍ଠାନ ମାନଙ୍କ ମଧ୍ୟରୁ କୌଣସି ଗୋଟିଏ ଅନୁଷ୍ଠାନ ଯଦି ସ୍ୱର୍ଗତ ମିଶ୍ରଙ୍କ ନାମରେ ନାମିତ କରାଯାଇ ପାରନ୍ତା ତେବେ କିଛିଟା ଋଣ ମୁକ୍ତ ହୁଅନ୍ତେ ତାଙ୍କର ଛାତ୍ର ସମାଜ ।

(ଗଣଇସ୍ତାହାର–୪.୬.୮୨)

୧୪ । ଅମୃତଲାଲ ସାହୁ, ଶିକ୍ଷକ

ଘେଁସ. (୨୧.୭.୨୦୦୨)

ବରଗଡ଼ ଅଂଚଳରେ ଯେଉଁ ମହୋଦୟ ଗୁରୁ, ମହାଗୁରୁ, ଗୁରୁଦେବ ତଥା ବୁଢ଼ାମାଷ୍ଟ୍ରେ ବୋଲି ଅଦ୍ୟାବଧି ଭକ୍ତି ଓ ସମ୍ମାନର ଅଧିକାରୀ, ତାଙ୍କର ମୃତ୍ୟୁର ୨୬ଟି ସମ୍ବତ୍ସର ଅତିବାହିତ । ତାଙ୍କର ଶତାଧିକ ଛାତ୍ର-ଛାତ୍ରୀ ଉଚ୍ଚ ପ୍ରତିଷ୍ଠାପୂର୍ଣ୍ଣ ପଦପଦବୀରେ ଆସୀନ । ଅଥଚ ଏଯାବତ୍ କବିଙ୍କର ସ୍ମୃତିରକ୍ଷା ହୋଇପାରିନାହିଁ । ଵ ମିଶ୍ର ଶର୍ମାଙ୍କର ଏକ ଜୀବନୀପୁସ୍ତକ ପ୍ରକାଶିତ ହେବାର ଜାଣି ମୁଁ ଅତିଶୟ ପ୍ରଫୁଲ୍ଲିତ ।

('କବିତା ସଂକଳନ' ପୁସ୍ତିକାର ଭୂମିକାରୁ ଆନୀତ)

୧୫ । ଶ୍ରୀ ହୃଷିକେଶ ଆଚାର୍ଯ୍ୟ, ଆଇନଜୀବୀ, ବରଗଡ଼

ଜର୍ଜହାଇସ୍କୁଲର 'ବୁଢ଼ାମାଷ୍ଟ୍ରେ' କହିଲେ ଵଶଶିଭୂଷଣ ଶର୍ମାଙ୍କୁ ବୁଝାଏ । ସେ

ଥିଲେ ମୋର ଗୁରୁ (୧୯୫୪-୧୯୫୮) । ମୋର ଗାଁ ସ୍କୁଲରେ ପ୍ରଧାନଶିକ୍ଷକ ଥିଲେ ମଧ୍ୟ ମୋର ପଢ଼ାପାଇଁ ଛାତ୍ରାବାସରେ ରହି ୰ ମିଶ୍ରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିଲା । ମୋର ମେଟ୍ରିକ ପାସ୍ କରିବାର ଶ୍ରେୟ ମୋର ଗୁରୁଙ୍କୁ ଦେବି । ଗଣିତରେ ପାସ୍ କରିବାର ଧାରା ସେ ଶିଖାଇଥିଲେ । ତାଙ୍କୁ ମୋର ଭକ୍ତିପୂତ ପ୍ରଣାମ ଜଣାଉଛି ଓ ତତ୍ ସଙ୍ଗେ ସଙ୍ଗେ ତାଙ୍କର ଏକ ଜୀବନୀ ପୁସ୍ତକ ପ୍ରକାଶିତ ହେବାର ଜାଣି ଅତିଶୟ ଆନନ୍ଦିତ ମନେ କରୁଛି ।

୧୬ । Dr. Antaryami Tripathy, Principal,
Women's College, Bargarh,
Dt : 10.12. 2014

Behold the foot prints of the jewel of Teachers "Budha Mastre". Shashi Bhusan Mishra Sharma, the old preceptor, is immortal by virtue of his timeless literary creations, faithful translations and transcreations, professional dedication, loving and caring affection, unstinted and unpretentious compassion, committed and devoted vocation in addition to his patriotic passion.

Sri Mishra Sharma is loved and lauded by one and all, teachers and the taught, cousins and the colleagues, friends and fellow beings and as such transforms himself into an institution standing unvanquished before the deadly strokes of all powerful Time.

Let the pride and prestige of Bargarh, the land of beauty and majesty, rest in peace and tranquillity in his celestial abodeshowering blessings on the unyielding youth.

Om Shanti, Shantih, Shantih, Shantih.

୧୭ । ଶ୍ରୀରାଧାମୋହନ ତ୍ରିପାଠୀ, ଶିକ୍ଷକ, ଅକ୍ଟୋବର ୨୦୦୦

ଓମର ଖୟାମ୍‌ର 'ରୁବାୟତ'ର ଅନେକ ଅନୁବାଦର ମୁଁ ଜଣେ ରସଗ୍ରାହୀ ପାଠକ, କିନ୍ତୁ ସ୍ୱର୍ଗତ ଶର୍ମାଙ୍କର ଅନୁବାଦର ସରଳତା ଓ ସାବଲୀଳତା ବାସ୍ତବରେ ମୋତେ ମୁଗ୍ଧ କରିଛି । ମୁଁ ଦୃଢ଼ତାର ସହ କହିବି ସ୍ୱର୍ଗତ ମିଶ୍ର ଶର୍ମା ଓମାରଙ୍କର ସେହି କାଳଜୟୀ ଆତ୍ମାର ଏକ ସଫଳ କୃତି ।

('ପ୍ରୀତିପାତ୍ର' ଅନୁବାଦ କାବ୍ୟରୁ ଅଭିମତରୁ ଆନୀତ)

୧୮ । ଅଧ୍ୟାପକ ବିଜୟକୃଷ୍ଣ ମିଶ୍ର, ବରଗଡ଼
(୦୧.୦୧.୨୦୦୩)

ଯେଉଁ ମହାନ୍ ଆଦର୍ଶ ଶିକ୍ଷକମାନେ ଜର୍ଜହାଇସ୍କୁଲରେ ଶିକ୍ଷକତା କରୁଥିଲେ ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ସ୍ୱର୍ଗତ ଶଶିଭୂଷଣ ମିଶ୍ରଶର୍ମା । ସେ ପଚାଶବର୍ଷକାଳ (୧୯୧୭ ରୁ ୧୯୬୭) ଶିକ୍ଷାଦାନ କରି ଘରେ ଘରେ ବୁଢ଼ାମାଷ୍ଟ୍ରେ ନାମରେ ପରିଚିତ । ପୁରୁଷାନୁକ୍ରମେ ଅନେକ ଛାତ୍ର ତାଙ୍କର ସାନ୍ନିଧ୍ୟ ଲାଭ କରିଛନ୍ତି । ଆମ ପାଇଁ ଜର୍ଜହାଇସ୍କୁଲ ଶାନ୍ତି ନିକେତନ ହେଲେ ବୁଢ଼ାମାଷ୍ଟ୍ରେ ଥିଲେ ଗୁରୁଦେବ ରବିନ୍ଦ୍ରନାଥ ଠାକୁର । ଛାତ୍ରମାନଙ୍କ ଜ୍ଞାନବୃଦ୍ଧି ନିମନ୍ତେ 'ପ୍ରତିବିମ୍ବ' ନାମକ ଏକ ଦୈନିକ ପ୍ରାଚୀର ସମ୍ବାଦପତ୍ର ବର୍ଷ ବର୍ଷ ଧରି ପ୍ରକାଶ କରି ଆସୁଥିଲେ । ଏକାଧାରରେ ସେ ଥିଲେ ଜଣେ ଆଦର୍ଶ ଶିକ୍ଷକ, ସାହିତ୍ୟିକ, ସାମ୍ବାଦିକ ଓ ମହାନ୍ ଚିନ୍ତାନାୟକ । ତାଙ୍କ ପରି ମହାନ୍ ଗୁରୁଦେବଙ୍କ ଆଶୀଷ ସବୁଜନ୍ମରେ ଉପଲବ୍ଧ ହେଉ–ଏହାହିଁ ଭଗବାନଙ୍କଠାରେ ପ୍ରାର୍ଥନା ।

('ପୁନରାଗଚ୍ଛ ସିଦ୍ଧାର୍ଥ' ପୁସ୍ତିକାର ଅଭିମତିରୁ ଆନୀତ)

୧୯ । ଶ୍ରୀ ଉତ୍ପନ୍ନ କୁମାର ଭୋଇ, ବରଗଡ଼

ସମଲ୍‌ପୁରି ଚେତନାର କଲ୍‌ଆଲ୍ ହିସାବେଁ ଜହ ପଏଚାନ ଥିବାର ନାଁ ଶଶିଭୂଷଣ୍ ମିଶ୍ରଶର୍ମା । ସଙ୍ଗେଲ୍ ଜିବନ୍ ଆର୍ ଉଚା ବିଚାର୍ ଥିବାର୍ ନିଦା ମୁନୁସ୍‌ଟେ ।

କବି ମିସ୍ର ସର୍ମା ସାହିତ୍ୟ ଭିତରେଁ ବିସ୍ୱ, ଜିବନ୍ ଚିନ୍ତା, ଉଚା ଜିବନ୍ ଦରସନ୍ ଆର୍ ବିପ୍ଲବର ବାର୍‌ତା ଦେବାର୍ କାଜେଁ ଜେନ୍‌ତା ମଦାଙ୍ଗ୍ ବାଗିର୍ ହିତ୍‌କାରୀ ଜିନିସ୍ ସବୁ ଭରିଛନ୍ ସେ ତୁରେଁ ନିସାଖା ଲୁକ୍‌କର୍ ଲାଗିଁ ଦରଦ୍ ଦେଖେଇଛନ୍ ଆରୁ ଅପନାର୍ ସଁସ୍‌କାର୍ ପ୍ରୟାସ୍ ଏକ ବି ଚାଲୁ ରଖିପାରିଛନ୍ ।

ସଂଗ୍ରାହକ : ଶ୍ରୀ ପ୍ରସନ୍ନ କୁମାର ଦାଶ
(ବରଗଡ଼)

## ପରିଶିଷ୍ଟ–୫

# ବୁଢ଼ାମାଷ୍ଟ୍ରେଙ୍କ ସାହିତ୍ୟ ସଂସାର*

ରଚୟିତା : ନାରାୟଣ ପୃଷେଠ୍

ସ୍ୱର୍ଗତ ଶଶିଭୂଷଣ ମିଶ୍ର ଶର୍ମା ବରଗଡରେ ଅଧିକ ଭାବରେ ବୁଢ଼ାମାଷ୍ଟ୍ରେ ନାମରେ ପରିଚିତ। ତାଙ୍କର ନାତି ବୟସର ଛାତ୍ରମାନେ ମଧ ବୁଢ଼ା ହେଲେଣି ତଥାପି ସମ୍ମାନଟି ଯେମିତି ଶଶିଭୂଷଣ ମିଶ୍ରଙ୍କ ପାଇଁ ସଂରକ୍ଷିତ ହୋଇ ରହିଛି।

ତା ୨୫.୩.୧୮୯୬ରେ ସେ ତାଳଶ୍ରୀଗିଡ଼ା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। ପିତାଙ୍କ ନାମ ହରିହର ମିଶ୍ର ଓ ମାତାଙ୍କ ନାମ ଗୁଣ୍ଡିଚା ଦେବୀ। ସ୍କୁଲରେ ପଢ଼ିବା ବେଳେ ଶଶିଭୂଷଣଙ୍କ ସାହିତ୍ୟରେ ଯେତେ ଅଭିରୁଚି ଥିଲା, ତା'ଠାରୁ ଅଧିକ ଆଗ୍ରହ ଓ ଦକ୍ଷତା ଥିଲା ଗଣିତ ଓ ଇଂରାଜୀରେ। ୧୯୧୫ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ୍ ପାଶ୍ କରି ୧୯୧୭ ମସିହାରେ ରେଭେନ୍ସା କଲେଜରୁ କୃତିତ୍ୱର ସହ ପ୍ରଥମ ଶ୍ରେଣୀରେ ଆଇ,ଏସ୍.ସି. ପରୀକ୍ଷାରେ ଉର୍ତ୍ତୀର୍ଣ୍ଣ ହେଲେ। ଆର୍ଥିକ ଅସ୍ୱଚ୍ଛଳତା ଯୋଗୁଁ ଉଚ୍ଚଶିକ୍ଷାରୁ ବଂଚିତ ହୋଇ ଜର୍ଜ ହାଇସ୍କୁଲରେ ସହକାରୀ ଶିକ୍ଷକ ଭାବେ ଯୋଗ ଦେଲେ। କିଛି ସମୟ ଲାଗି ବରପାଲି ଏମ୍.ଇ. ସ୍କୁଲକୁ ଡେପୁଟେସନ୍‌ରେ ଯାଇଥିଲେ। ସେତେବେଳେ ସ୍ୱଭାବ କବି ଗଙ୍ଗାଧର ସ୍କୁଲ୍‌ର ସଂପାଦକ ଥା'ନ୍ତି। ଶଶିଭୂଷଣଙ୍କ ଭଳି ଏକ ଯୋଗ୍ୟ ଶିକ୍ଷକଙ୍କୁ ସେଠାରେ ନିଯୁକ୍ତି ଦେବାଲାଗି ✓ ପଣ୍ଡିତ ରାଘବ ମିଶ୍ର ଓ ✓ ବାଲୁଙ୍କେଶ୍ୱର ମିଶ୍ର ଗଙ୍ଗାଧରଙ୍କୁ ପରାମର୍ଶ ଦେଇଥିଲେ। ସେଠାରୁ ସେ ରିଲିଭ୍ ହୋଇ (ଦ୍ରଷ୍ଟବ୍ୟ: ଶ୍ରୀ ମନବୋଧ ମେହେରଙ୍କ ରଚିତ 'ଗଙ୍ଗାଧର ମେହେର ନାଟକ') ପୁଣି ଜର୍ଜ ହାଇସ୍କୁଲରେ ଯୋଗଦେଇ ରହିଗଲେ ଅବସର ନେବା ପର୍ଯ୍ୟନ୍ତ। ଏହି ସ୍କୁଲରେ ଦୀର୍ଘ ୪୮ ବର୍ଷ କାର୍ଯ୍ୟକରି ହଜାର ହଜାର ଛାତ୍ରଙ୍କ ଜୀବନ ଗଢ଼ିଛନ୍ତି।

ଜଣେ ଜ୍ଞାନଗର୍ଭା ଚେତନଶୀଳ ଶିକ୍ଷକ ଭାବେ ସେ ଯେତିକି ସ୍ମରଣୀୟ ହୋଇ ରହିବେ, ତା'ଠାରୁ ଅଧିକ, କାଳକାଳକୁ ସ୍ମରଣରେ ରହିବେ ଉଭୟ ଓଡ଼ିଆ ଓ ସମ୍ବଲପୁରୀ ଭାଷାର ଜଣେ ସୃଜନଶୀଳ ସାଧକ ଭାବେ, ଜଣେ ଅନୁସୃଜନକାରୀ ଅନୁବାଦକ ଭାବେ ଓ ସର୍ବୋପରି ଏହି ଉଭୟ ଭାଷାକୁ ତାଙ୍କର ବିପୁଳ ଅବଦାନ ଲାଗି। ଓଡ଼ିଆ ଭାଷାରେ ତାଙ୍କର ୬ଟି ପୁସ୍ତକ, ସମ୍ବଲପୁରୀ ଭାଷାରେ ୩ଟି, କନନ୍ ଡୟେଲ୍‌ଙ୍କ ଉପନ୍ୟାସ

* ଗଣ ଇସ୍ତାହାର : ତା. ୭.୬.୨୦୦୨ (ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ)।

ଛାୟାରେ ଲିଖିତ ଗୋଟିଏ ଉପନ୍ୟାସ । (ଛଦ୍ମବେଶର ରହସ୍ୟଭେଦ), ଗଙ୍ଗାଧରଙ୍କ ୬ଟି କବିତାର ଇଂରାଜୀ ଅନୁବାଦ Gleanings From Gangadhar ଓ ଓମାର୍ ଖୟାମ୍‌ଙ୍କ 'ରୁବାୟତ୍'ର ଅନୁବାଦ (ପ୍ରୀତିପାତ୍ର) ପ୍ରକାଶିତ ହୋଇ ପାରିଛି ।

ଆର୍ଥିକ ଅସୁବିଧା ଯୋଗୁଁ ଅନେକ ଲେଖା ପାଣ୍ଡୁଲିପି ଆକାରରେ ରହିଯାଇଛି । ସେ ମଧ୍ୟରୁ ଓଡ଼ିଆରେ ୧୫ଟି ମୌଳିକ ରଚନା, ଅନୁବାଦ ୫ଟି ଏବଂ ଇଂରାଜୀରେ ୫ଟି ପାଣ୍ଡୁଲିପି ପ୍ରକାଶିତ ହୋଇ ପାରିନାହିଁ । ମୋ ଜାଣିବାରେ ଶଶିଭୂଷଣ ଥିଲେ ଓଡିଶାର ପ୍ରଥମ ବ୍ୟକ୍ତି ଚାଳିଶ ପଇଂଚାଳିଶ ବର୍ଷ ତଳେ ସ୍ୱଭାବ କବି ଗଙ୍ଗାଧରଙ୍କ 'ତପସ୍ୱିନୀ'ର ଇଂରାଜୀ ଅନୁବାଦ 'The Banished' ଏବଂ ଉତ୍କଳମଣି ଗୋପବନ୍ଧୁଙ୍କ 'ବନ୍ଦୀର ଆତ୍ମକଥା'କୁ (Soliloquy of a Prisoner) ଇଂରାଜୀରେ ଅନୁବାଦ କରିଥିଲେ । ମହାତ୍ମା ଗାନ୍ଧୀଙ୍କ ଜୀବନ ଓ ଦର୍ଶନ ଉପରେ ଇଂରାଜୀରେ ଏଇ ପୂର୍ଣ୍ଣାଙ୍ଗ ନାଟକ (Gandhi the Superman) ଲେଖିଥିଲେ । ଓଡ଼ିଶାର ଦୁର୍ଭାଗ୍ୟ ଏ ତିନୋଟି ଉଚ୍ଚକୋଟିର ଲେଖା ବର୍ତ୍ତମାନ ସୁଦ୍ଧା ପ୍ରକାଶିତ ହୋଇ ପାରିନାହିଁ । ସେହିପରି ସମ୍ବଲପୁରୀ ଲେଖକ ଭାବେ ସେ ପ୍ରଥମ ବ୍ୟକ୍ତି ଯେ କି ଅର୍ଦ୍ଧ ଶତାବ୍ଦୀ ପୂର୍ବେ ୱର୍ଡସ୍ ୱର୍ଥ, କଲେରିଜ୍, ଟେନିସନ୍ ତଥା ଅନ୍ୟାନ୍ୟ ଇଂରାଜୀ କବିମାନଙ୍କ କେତୋଟି କବିତା ସମ୍ବଲପୁରୀ ଭାଷାରେ ଅନୁବାଦ କରିଥିଲେ ।

୧୯୪୦ ରୁ ୧୯୬୦ 'ଭିତରେ ସମ୍ବଲପୁରୀ ଗୀତରୁ ଆଦିରସାତ୍ମକ ଚେତନା ପରିହାର କରି ସେ ଭିତରେ ସାମାଜିକ-ଜନ-ଜୀବନର କଥା ପ୍ରକାଶ କରିବା ଲାଗି ସମ୍ବଲପୁରୀ ଗୀତ ଧାରାରେ ଝଟକା ଦେଇ ଧାରା ପରିବର୍ତ୍ତନ ପ୍ରକାଶ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ କବିପ୍ରାଣ ସ୍ୱର୍ଗତ ଖଗେଶ୍ୱର ଶେଠ (ଗ୍ରନ୍ଥାବଳୀର ତୃତୀୟ ଭାଗ ପ୍ରଥମ ସମ୍ବଲପୁରୀ ଗ୍ରନ୍ଥାବଳୀ'ର 'ପଏର୍ଚ୍ଛାସତୀ' ଓ ଅନ୍ୟାନ୍ୟ କବିତା), ଇନ୍ଦ୍ରମଣି ସାହୁ (କୁରେ ଫୁଲ, ଝାର୍ ମଲି, ଚଷାକର୍ ଭର୍‌ସା), ସତ୍ୟନାରାୟଣ ବହିଦାର, ମୋତିଲାଲ୍ ପଣ୍ଡା, ଗଙ୍ଗାଭୂଷଣ ପଣ୍ଡା (ହୁଁ କରେ ନାଇଁ ହାଁ କରେ ନାଇଁ ତାହାକେ ଦେସନ୍ ହାନି), ଶିବନାରାୟଣ ଦେବ, ବିରଞ୍ଚିନାରାୟଣ ଧର ଓ ଶଶିଭୂଷଣ ମିଶ୍ର ଅନ୍ୟତମ । ଏ ସମୟ ଭିତରେ ବିଧୁଭୂଷଣ ଗୁରୁ ('ବନଶ୍ରୀ'ର ଝୁପୁର୍ ଝୁପୁର୍ ପାଏନ୍ ବର୍‌ସେ ପଲ୍‌ହା ରୁଇ ଚାଲ୍‌ରେ ବହେନ୍) ସମ୍ବଲପୁରୀ ଭାଷା, ସାହିତ୍ୟ, ରୂଢ଼ି ପ୍ରୟୋଗ, କଳାହାଣ୍ଡି କନ୍ଧମାନଙ୍କ ଢାପନୃତ୍ୟ ଇତ୍ୟାଦି ଗବେଷଣା ମୂଳକ ପ୍ରବନ୍ଧ ଇତ୍ୟାଦି ସହକାରରେ (୧୯୪୨-୪୩) ଓ ସମ୍ବଲପୁରୀ ରାମାୟଣ ପ୍ରବନ୍ଧ 'ଶଙ୍ଖ'ରେ ପ୍ରକାଶ କରି ଏ ଭାଷା ସଂପର୍କରେ ପ୍ରବନ୍ଧ ଲେଖାର ଆଦ୍ୟ ଉଦ୍ୟୋକ୍ତା ଥିଲେ ।

ନିଜ କଥିତ ମାତୃଭାଷା ପ୍ରଗାଢ଼ ମମତ୍ୱବୋଧ ଶଶିବାବୁଙ୍କ ଆରମ୍ଭ ହୋଇଥିଲା ୧୯୧୩ ମସିହାରୁ । ସମ୍ବଲପୁର ଜିଲ୍ଲା ହାଇସ୍କୁଲର ଛାତ୍ର ଥିବାବେଳେ ସେଠାରେ ଜଣେ ଗାୟକଙ୍କ ଦ୍ୱାରା ଆବୃତ୍ତ କରାଯାଇଥିବା ଆଶୁକବି ବାଲାଜୀ ମେହେରଙ୍କ 'ଗୁଡିଁଆ ଗୀତ୍'

ଶୁଣି ତାକୁ ଟିପି ରଖିଥିଲେ। ବରଗଡ଼ ଜର୍ଜ ହାଇସ୍କୁଲ୍‌ରେ ଶିକ୍ଷକତା କଲାବେଳେ ୧୯୪୦ ପର୍ଯ୍ୟନ୍ତ, ଅନ୍ୟାନ୍ୟ ଲେଖା ଓ ଅନୁବାଦ ସହ ୧,୨୦୦ ବିଶୁଦ୍ଧ ସମ୍ବଲପୁରୀ ପ୍ରବାଦ ସଂଗ୍ରହ କରିଥିଲେ। ଦୁର୍ଭାଗ୍ୟର କଥା ୧୯୪୦ରେ ତାଙ୍କର ଦୁଇଟି ପୁଅଝିଅ ଚାରିଦିନ ଅନ୍ତରରେ ମୃତ୍ୟୁବରଣ କଲେ। ତାଙ୍କ ସ୍ତ୍ରୀ ବାତୁଳି ହୋଇଗଲେ। ପାରିବାରିକ ଝଞ୍ଜାମାଡ଼ରେ ଶଶିଭୂଷଣ କ୍ଷତବିକ୍ଷତ ଥିଲାବେଳେ କିନ୍ତୁ ସମ୍ବଲପୁରୀ ସାହିତ୍ୟର ଘୋର କ୍ଷତି ହେଲା। ଦୀର୍ଘ ଦିନ ଧରି ସଂଗ୍ରହ କରିଥିବା ପ୍ରବାଦ ପାଣ୍ଡୁଲିପିକୁ ଉଇ ଖାଇଗଲେ। (ଏ ଲେଖକ ପାଖକୁ ତା. ୬.୩.୧୯୬୮ର ପତ୍ର)

କଥିତ ଭାଷାକୁ ଲିଖିତ ଭାଷାରେ ପ୍ରକାଶ କଲାବେଳେ ଶଶିବାବୁ ଖୁବ୍ ନିଷ୍ଠାର ସହ ସାଧନା କରିଛନ୍ତି ଉଭୟ ଭାଷା ଓ ଭାବ ମଧ୍ୟରେ ସମନ୍ୱୟ ରଖିବା ଲାଗି। ସଂଗୀତମୟ ଭାଷା, ଗୀତିମୟ ମାଧୁର୍ଯ୍ୟ ଓ ଚେତନାଦ୍ୟୋତକ ଭାବ ଗାମ୍ଭୀର୍ଯ୍ୟ ଲାଗି 'ପଲ୍‌ସା ଗୁଚ୍ଛା' 'ସମ୍ବଲପୁରୀ ରସ୍ କବିତା'ର ଅନେକ କବିତା ହେଉ, ହୀରାକୁଦ ବନ୍ଧ ନିର୍ମାଣ ବେଳେ ନିଜର ଭାବନା ରାଜିର କବିତା ହେଉ ବା ଅନ୍ୟାନ୍ୟ କବିତା ହେଉ, କି 'ମାଁ କହ ଗୁଟେ କଥାନି' ହେଉ, କୌଣସି କବିତାରେ ନାନ୍ଦନିକ ପୁଲକ ବ୍ୟାହତ ହୋଇନାହିଁ। ପାଠକୀୟ ରସ ଭଙ୍ଗ ହୋଇନାହିଁ।

କଥିତ ସମ୍ବଲପୁରୀକୁ ଲିଖିତ ସମ୍ବଲପୁରୀ, ଲିଖିତ ଲୋକ ସାହିତ୍ୟକୁ ଲିଖିତ ଶିଷ୍ଟ ସାହିତ୍ୟରେ ପରିବର୍ତ୍ତନର ଏହି ପ୍ରୟାସରେ ଆଦ୍ୟ ସାଧକ ମାନଙ୍କ ମଧ୍ୟରେ ଶଶିଭୂଷଣ ଥିଲେ ଅନ୍ୟତମ। ସମ୍ବଲପୁରୀ ଭାଷା-ମମତା, ସୃଜନ ଓ ସଂରକ୍ଷଣର ଅନ୍ୟତମ ନିରବ ସାଧକ। ଜୀବନ ଜଞ୍ଜାଳ ତାଙ୍କୁ ଶିଥିଳ କରି ପାରିନାହିଁ, ଜୀବନର ସବୁ କଠୋର ପରୀକ୍ଷାର ଅନଳରେ ସିଝି ସିଝି ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ବରଂ ସୁନା ଭଳି ଝଟକି ଉଠିଛି। ତାଙ୍କ ସାରସ୍ୱତ ସାଧନା ଲାଗି ୧୯୭୩-୭୪ ରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ସମ୍ମାନୀତ କରିଥିଲେ। ଉତ୍ତୁଙ୍ଗ ପ୍ରତିଭାର ଅଧିକାରୀ, କର୍ମ ସଚେତନ ସାରସ୍ୱତ ସାଧକଙ୍କ ଦେହାବସାନ ହୋଇଥିଲା ତା. ୫.୬.୧୯୭୬ରେ। ତାଙ୍କର ୨୬ତମ ଶ୍ରାଦ୍ଧବାର୍ଷିକୀରେ ସ୍ମୃତିର ଅନେକ ଶ୍ରଦ୍ଧାଞ୍ଜଳି।

ସଂଗ୍ରାହକ
ଶ୍ରୀ ପ୍ରସନ୍ନ କୁମାର ଦାଶ
(ବରଗଡ଼)

## ଶଶି ଆଜ୍ଞାଙ୍କ କଥା*

**ରଚୟିତା : ହେମଚନ୍ଦ୍ର ଆଚାର୍ଯ୍ୟ**

ବରଗଡ଼ ଜର୍ଜ୍ଜ ହାଇସ୍କୁଲ ଛାତ୍ର ଜୀବନର ଶିକ୍ଷକ ତଥା ଶିକ୍ଷା ପ୍ରଣାଳୀ କଥା ଆଜି ଭାବି ବସିଲେ ମନେହୁଏ ସେସବୁ ସତ ଥିଲା ନା ନିଦ୍ରିତ ନିଶିଥର ଚିତ୍ରିତ ସ୍ୱପ୍ନ ? ଏବେ ଭାବିଲେ ଯୁଗଜୀବୀ ଶଶିଭୂଷଣ ମିଶ୍ର ଶର୍ମା, ବୁଢ଼ାମାଷ୍ଟ୍ରେଙ୍କ କଥା ସତ ସତ ଲାଗେନା । ତାଙ୍କୁ ବିଶ୍ୱକୋଷ କହିବାରେ କିଛି ଅତ୍ୟୁକ୍ତି ବା ଅସମ୍ଭବ ମନେ ହୁଏନା । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ମାତ୍ର ଆଇଏସ୍‌ସି, ହେଲେ ବଡ଼ ବଡ଼ ବିଶ୍ୱବିଦ୍ୟାଳୟ ମାନଙ୍କରେ ଅସମାହିତ ବୋଧ ହୋଇଥିବା ଗଣିତ ତାଙ୍କ ପାଖକୁ ସମାଧାନ ପାଇଁ କୁଆଡ଼େ ଆସୁଥିଲା ଓ ସେ ତାର ସମାଧାାନ କରି ବିଶ୍ୱବିଦ୍ୟାଳୟମାନଙ୍କଠାରୁ ବିଜ୍ଞତାର ସ୍ୱୀକୃତି ପାଉଥିଲେ । ସେହି ସୀମିତ ଯୋଗ୍ୟତା ନେଇ ହାଇସ୍କୁଲ୍‌ର ଚତୁର୍ଥ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟ ଥିବା ଯେ କୌଣସି ବିଷୟ ଦେଲେ ବି ସେ ସୁଚାରୁ ରୂପେ ପଢ଼ାଇ ପାରୁଥିଲେ । ବରଗଡ଼ ଜର୍ଜ ହାଇସ୍କୁଲ ସୁବିଦ୍ୟା ତଥା ସୁନିପୁଣ ଶିକ୍ଷକବର୍ଗଙ୍କର ପୀଠ ଥିବାସତ୍ତ୍ୱେ ବି ଭୂଗୋଳ ବିଷୟ ଅଧାପନା ଯୋଗ୍ୟତାର ଅଧିକାରୀ କେହି ନ ଥିବାରୁ ବିଜ୍ଞ ବୁଢ଼ାମାଷ୍ଟ୍ରେ ଉପର ଚାରିଶ୍ରେଣୀର ଭୂଗୋଳ ଅଧାପନାର ଦାୟିତ୍ୱ ନିର୍ବାହ କରୁଥିଲେ । କୌଣସି ଛାତ୍ର ତାଙ୍କ ଅଧାପନାରେ ଅମନଯୋଗୀ ହେଉ ନଥିଲେ । କାରଣ ସେ ପାଠ୍ୟ ବିଷୟ ଉପରେ ବେଶି ଜୋର୍ ନ ଦେଇ ଆମ ରାଜ୍ୟର, ଦେଶର ତଥା ଅନ୍ତର୍ଦେଶୀୟ ବିଶିଷ୍ଟ ପ୍ରତିଭାମାନଙ୍କ ବିଷୟରେ ସମ୍ୟକ୍ ଆଲୋଚନା କରୁଥିଲେ । ସମ୍ବଲପୁରୀ ଭାଷାର ସେ ଥିଲେ ଜଣେ ଆଦ୍ୟକବି । ତାଙ୍କ ଦୟାରୁ ତାଙ୍କର ଅନେକ ଛାତ୍ର ଭବିଷ୍ୟତରେ କବି, ବକ୍ତା, ରାଜନୀତିଜ୍ଞ ଭାବେ ତିଆରି ହୋଇଥିବା ବିଷୟ ଏବେ ସ୍ପଷ୍ଟ ପ୍ରତୀତ ହୁଏ । ପାଠ୍ୟ ବିଷୟ ଛାଡ଼ି ଅନ୍ୟ ବିଷୟ ସବୁ ଆଲୋଚନା କରି ସମୟ ନଷ୍ଟ କରୁଥିବା କଥା କିଏ କେବେ କହିଲେ ସେ କହନ୍ତି, ପାଠ୍ୟ ବିଷୟ ସବୁ ବହିରେ ଅଛି । ମାତ୍ର ତାଙ୍କ ବହିରେ ଯାହା ନାହିଁ ସେସବୁ ପିଲାଙ୍କ ଜ୍ଞାନକୁ ଆଣିବା ମୁଁ ନିଜେ ନିଜର କର୍ତ୍ତବ୍ୟ ବୋଲି ମନେ କରେ ।

ସେ ଆମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ ଥିଲେ । ପ୍ରତି ଶନିବାର ସନ୍ଧ୍ୟାରେ ତର୍କ ସଭା, ଗୀତ ପ୍ରତିଯୋଗିତା, ଶ୍ଳୋକାନ୍ତ ପ୍ରତିଯୋଗିତା ହେବା ସଂପର୍କରେ କିଛି ବ୍ୟତିକ୍ରମ ହେବାର ଜାଣିଲେ ସେ ମନ ଦୁଃଖ କରନ୍ତି । ଛାତ୍ରାବାସ ମଧରେ ଅଧ ଏକର ପ୍ରାୟ ଜମି ଥିଲା, ସେଥିରେ ସେ ଫୁଲ ଚାଷ, ପରିବା ଚାଷ ବ୍ୟତୀତ ପ୍ରାୟ ୧୦ ଡେସିମିଲର ଜମିରେ ଔଷଧୀୟ ଗୁଳ୍ମଲତା ଆଦି ଚାଷ କରିବାରେ ସେ ବିଶେଷ ଦୃଷ୍ଟି ଦେଇଥିଲେ ।

ଆଜି ମନେପଡ଼େ ଆମମାନଙ୍କର ଯଦି କେବେ ଉଦ୍ଭିଦ ଜଗତ୍ ପ୍ରତି କିଛି ଆନ୍ତରିକତା ଆସିଛି, ତାହା ତାଙ୍କର ଦୟା କହିବା ଠିକ୍ ହେବ । ସେ ଚାହିଁଥିଲେ ଟିଉସନ୍‌ରେ ଅନେକ ଅର୍ଥ ଉପାର୍ଜନ କରିପାରିଥାନ୍ତେ । ମାତ୍ର ସେ କହୁଥିଲେ ଛାତ୍ରାବାସର ସବୁ ଅନ୍ତେବାସୀଙ୍କର ପାଠ୍ୟଗତ ସନ୍ଦେହ ମୋଚନ କରିବା ସୁପରିନ୍‌ଟେଣ୍ଡେଣ୍ଟର ଧର୍ମ । ସେ ଅନେକ ବିଷୟ ପଢ଼ାଇଛନ୍ତି ଆଉ ଆମେ ଶିଖିଛୁ, କିନ୍ତୁ ତାଙ୍କର ବ୍ୟକ୍ତିଗତ ଜୀବନରେ ଯେଉଁ ଆଦର୍ଶ ଦେଖାଇଛନ୍ତି ତାହା ଆମେ ଜୀବନର ଶେଷ ଅବସ୍ଥାରେ ବି ଭୁଲି ପାରିବୁ ନାହିଁ । ସବୁଠାରୁ ବିସ୍ମୟକର ହେଲା ତାଙ୍କର ଜୀଇଁବା କଳା ।

ବଡ଼ ପୁଅ ନବମ ଶ୍ରେଣୀ ପଢୁଥିବା ବେଳେ ଅକାଳରେ କାଳଗ୍ରସ୍ତ ହେଲା । ଦ୍ୱିତୀୟ ପୁତ୍ର ସଂସାର ବିରାଗୀ ଭାବ ହେତୁ ବଡ଼ ହେବା ପର୍ଯ୍ୟନ୍ତ ଲୁଗା ପିନ୍ଧୁ ନଥିଲା । ତାପରେ ଗୋଟିଏ ଝିଅ ସେ ବି ଅକାଳରେ ପ୍ରାଣତ୍ୟାଗ କଲା । ତାପରେ ଦୁଇଟି ପୁଅ ବାଳ ଚପଳତା ଅଝଟପ୍ରାୟ । ଏସବୁ ପାରିବାରିକ ଦୁଃଖରେ ତାଙ୍କର ସହଧର୍ମିଣୀ ଅସୁସ୍ଥ ମସ୍ତିଷ୍କ । ତଥାପି ଆଜ୍ଞାଙ୍କର ଆଖିରେ ଅଶ୍ରୁ ବା ମନରେ ବୈମନସ୍ୟ ଭାବ କେହି ଦେଖି ନଥିଲେ । ସବୁବେଳେ ନିର୍ବିକାର ମାନସିକ ସ୍ଥିତି । ଛାତ୍ରାବାସର ନିୟନ୍ତା, ମାତ୍ର ଛାତ୍ରାବାସସ୍ଥିତ ମେସ୍‌ରୁ କାଣିଚାଏ ବି ସାହାଯ୍ୟ ସେ କେବେ ଲୋଡ଼ି ନାହାନ୍ତି । ସେ ଜଣେ ଶିକ୍ଷକ ହେଲେ ସେ କ'ଣ ପଢ଼ାଇ ନ ଥିଲେ କହିବା ମୁସ୍କିଲ୍ । ମାତ୍ର ସେ ଦେଖେଇ ଦେଇଥିଲେ ଅନତିକ୍ରମଣୀୟ ବାଧାବିଘ୍ନ ଭିତରେ ମଣିଷର ଏକ ବଞ୍ଚିବା କଳା । ମନେହୁଏ ତାଙ୍କର ଶିକ୍ଷକତା ଥିଲା ଏକ କଠୋର ତପଶ୍ଚରଣ ଆଉ ଆଜ୍ଞା ଥିଲେ ଏକ ଅଟଳ ତପସ୍ୱୀ । ତାଙ୍କଠାରୁ ଆମେ ଶିଖିଲୁ ଧୈର୍ଯ୍ୟର ସୀମାନ୍ତ ରୂପ, ଯାହା ଆମର ବାସ୍ତବ ଜୀବନରେ ବି ଆମକୁ ବଞ୍ଚାଇ ରଖିଛି । ଏବେ ଅନେକ ବିମର୍ଷକର ସମୟରେ ଆଶା ସଂଚାର କରିବା ପାଇଁ ତାଙ୍କ କଥା ମନେ ପକାଇବାକୁ ଇଛା ହୁଏ । ଏବେ ବି ଜୀବନଟେ ତାଙ୍କର ଅଭ୍ରାନ୍ତ ଅକ୍ଳାନ୍ତ ପ୍ରତିଛବି ମନ ଆଖି କି ସ୍ପଷ୍ଟ ଦିଶେ ।

ସମ୍ବାଦ : ତା ୪-୦୨-୦୫ *

ସଂଗ୍ରାହକ : ଶ୍ରୀ ପ୍ରସନ୍ନ କୁମାର ଦାଶ
(ବରଗଡ଼)

* ଦୈନିକ ସମ୍ବାଦ : ତା.୪.୨.୨୦୦୫ ରେ ପ୍ରକାଶିତ ।

# ଶ୍ରୀ ଗାନ୍ଧି ଗୀତା ।

ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମ୍ମା

ଶିକ୍ଷକ

ଉଚ୍ଚ ଇଂରାଜୀ ବିଦ୍ୟାଳୟ

ବରଗଡ଼ଙ୍କ

ଦ୍ୱାରା

ବିରଚିତ ଓ ପ୍ରକାଶିତ ।

୧୯୫୩



PRINTED AT
THE SHANTI PRINTING PRESS
BARGARH.
1953

ମୂଲ୍ୟ ୪ ୦ ୟ ବାର ଅଣା ମାତ୍ର

# ରଖ୍, ମା ପଲ୍ସା ଗୁଛା ।

ବା

( ଶାନ୍ତଦୂତ ଶ୍ରୀକୃଷ୍ଣ )



ଲେଖକ—

**ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମ୍ମା**

ଶିକ୍ଷକ, ବରଗଡ଼

ପ୍ରକାଶକ—

ଶ୍ରୀ ଦୁର୍ଗା ପ୍ରସାଦ ମିଶ୍ର ବି. ଏ.

ପ୍ରଥମ ସଂସ୍କରଣ

୧୯୫୯

( ୧୯ ନୂ: ପ: ) ମୂଲ୍ୟ- ୦/ ୯

# ଉତ୍ସର୍ଗ

ଯେଉଁ ବାଳକ ବାଳିକାମାନଙ୍କ ଶିକ୍ଷା ଓ

ଚିତ୍ତବିନୋଦନ ନିମନ୍ତେ ଏହା ଲିଖିତ,

ସେମାନଙ୍କର ପବିତ୍ର ନାମରେ ଏହା

ଉତ୍ସୃଷ୍ଟ ହେଲା । ସେମାନେ

ଏହାକୁ ସାଦରେ ଗ୍ରହଣ

କଲେ, ମୋର ଶ୍ରମ

ସାର୍ଥକ ହେବ ।

ଇତି :—

ବିନୀତ

ଲେଖକ

ଶ୍ରୀ ଶାନ୍ତିଲତା ମିଶ୍ର ଶର୍ମା

# ଗାଉଁଲି ଗପ

ଲେଖକ
ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା
ଶିକ୍ଷକ, ଜଜ ହାଇସ୍କୁଲ, ବରଗଡ

ପ୍ରଥମ ସଂସ୍କରଣ
୧୯୬୦

ପ୍ରକାଶକ
କଟକ ଟ୍ରେଡ଼ିଂ କମ୍ପାନୀ
ବାଲୁବଜାର, କଟକ-୨

ମୂଲ୍ୟ [illegible] ନୂଆ ପଇସା

# ଅଦ୍ଭୁତ ହତ୍ୟାକାରୀ



ଲେଖକ

ଶ୍ରୀ ଶଶୀଭୂଷଣ ମିଶ୍ର

ପ୍ରଥମ ସଂସ୍କରଣ

୧୯୬୦

ପ୍ରକାଶକ

କଟକ ଟ୍ରେଡ଼ିଂ କମ୍ପାନୀ

ବାଲୁବଜାର, [illegible]-୨

ମୂଲ୍ୟ ଟ ୧

# ଆଗ ଓଡ଼ିଶା, ଏବ ଓଡ଼ିଶା ଓ ବାଲି ଓଡିଶା

ଲେଖକ- ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମ୍ମା

ଶିକ୍ଷକ, ଜର୍ଜ୍ଜ ହାଇ ସ୍କୁଲ,

ବରଗଡ଼



ପ୍ରକାଶକ—

ଶ୍ରୀ ଦୁର୍ଗା ପ୍ରସାଦ ମିଶ୍ର, ବି. ଏ.

ମୂଲ୍ୟ— ପଞ୍ଚର ନୂଆ ପଇସା

# ଛନ୍ଦବେଙ୍ଗାର ରହସ୍ୟଭେଦ



ଲେଖକ— ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମ୍ମା
ଶିକ୍ଷକ, ଜର୍ଜହାଇସ୍କୁଲ
ବରଗଡ଼

ପ୍ରକାଶକ— ଦୁର୍ଗାପ୍ରସାଦ ମିଶ୍ର ବି. ଏ.

# ମାଁ, କହ୍ ଗୁଟେ କଥାନି

ଲେଖକ—ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା
ଶିକ୍ଷକ, ଇଙ୍ଗ୍ ହାଇ ସ୍କୁଲ୍, ବରଗଡ଼

ପ୍ରକାଶକ— ଦୁର୍ଗାପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ
୧୯୬୪



ମୂଲ୍ୟ—୧୫ ନୂ. ପ.

# Gleanings from Gangadhar

By

**Sri Shashibhusan Mishra**



Published by

Durga Prasad Mishra,

Bargarh, Sambalpur.

*Price Fifty Paise*

# The Banished

[English version of Gangadhar Meher's Tapaswini]

By

Shashibhusan Mishra Sharma

(State Sahitya Academy Awardee)

Edited By:

Prof. Minaketan Purohit

Bargarh

Publisher:

Prasanna Kumar Dash, H.M.

At/Po/Dist.-Bargarh-768028 (Orissa

Ph. No.- (06646)230323

# ପୁନରାଗଚ୍ଛ ସିଦ୍ଧାର୍ଥ

## (କବିତା ସଂକଳନ)

- ଲେଖକ -
ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା
(ରାଜ୍ୟପାଳ ପୁରସ୍କାରପ୍ରାପ୍ତ ଶିକ୍ଷକ
ଓ ସାହିତ୍ୟ ଏକାଡେମୀ ପୁରସ୍କୃତ)



- ସଂକଳନ ଓ ସଂପାଦନା -
ଶ୍ରୀ ପ୍ରସନ୍ନ କୁମାର ଦାଶ

ଡିସେମ୍ବର - ୨୦୦୬

ଓଁ

# ଓଡ଼ିଆ ଗୀତା

(ଶ୍ରୀମଦ୍ ଭଗବଦ୍ ଗୀତାର ୧ମ ଓ ୨ୟ ଅଧ୍ୟାୟର ଅନୁବାଦ)

-ଲେଖକ-

ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା

(ରାଜ୍ୟପାଳ ପୁରସ୍କାରପ୍ରାପ୍ତ ଶିକ୍ଷକ ଓ

ସାହିତ୍ୟ ଏକାଡ଼େମୀ ପୁରସ୍କୃତ)



- ସଂକଳନ ଓ ସଂପାଦନା -

ଡ. ନନ୍ଦକିଶୋର ଦାଶ

ଶ୍ରୀ ପ୍ରସନ୍ନ କୁମାର ଦାଶ

# ରସକବିତା

ଓ

ଶଶିଭୂଷଣ ମିଶ୍ର ଶର୍ମା ଙ୍କର

# କାବ୍ୟ କବିତା ସଂକଳନ

ସଂଗ୍ରାହକ- ପ୍ରସନ୍ନ କୁମାର ଦାଶ



ଶଶିଭୂଷଣ ମିଶ୍ର ଶର୍ମା

# ପ୍ରୀତିପାତ୍ର

(ଓମାର ଖୟ୍ୟାମଙ୍କ ରୁବାୟତ ର ଅନୁବାଦ)



ଲେଖକ

ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା, ଶିକ୍ଷକ

ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ

ବରଗଡ଼

## ନିର୍ବାଚିତ ଗ୍ରନ୍ଥପଞ୍ଜି

**ପ୍ରାଥମିକ ଉପାଦାନ ପଞ୍ଜିକା : (ଓଡ଼ିଆ)**

ମିଶ୍ର, ଶଶିଭୂଷଣ

୧୯୫୩ : ଶ୍ରୀଗାନ୍ଧି ଗୀତା
ଶାନ୍ତି ପ୍ରିଣ୍ଟିଂ ପ୍ରେସ୍, ବରଗଡ଼

୧୯୫୯ : ରଖ୍, ମାଁ ପଲ୍‌ସା ଗୁଛା
ଶାନ୍ତି ପ୍ରିଣ୍ଟିଂ ପ୍ରେସ୍, ବରଗଡ଼

୧୯୬୦ : ଗାଉଁଲି ଗପ
କଟକ ଟ୍ରେଡ଼ିଂ କମ୍ପାନୀ, କଟକ

୧୯୬୦ : ଆଗ ଓଡ଼ିଶା, ଏବ ଓଡ଼ିଶା
ଓ କାଲି ଓଡ଼ିଶା, ଶାନ୍ତି ପ୍ରିଣ୍ଟିଂ ପ୍ରେସ୍, ବରଗଡ଼ ।

୧୯୬୦ : ଅଦ୍ଭୁତ ହତ୍ୟାକାରୀ
କଟକ ଟ୍ରେଡ଼ିଂ କମ୍ପାନୀ, କଟକ ।

୧୯୬୪: ମାଁ, କହ ଗୁଟେ କଥାନି
ଟାଉନ୍ ପ୍ରିଣ୍ଟିଂ ପ୍ରେସ୍, ବରଗଡ଼

୧୯୬୪(?) : ଚାତୁର୍ଯ୍ୟ ଗଳ୍ପସାଗର
— —

୧୯୬୫(?) : ଛଦ୍ମଭେଦର ରହସ୍ୟ ଭେଦ
— —

୨୦୦୦ : ପ୍ରୀତିପାତ୍ର
ପ୍ରକାଶକ : ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ଼

୨୦୦୨ : ରସ କବିତା
ପ୍ରକାଶକ:ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ଼

୨୦୦୨ : ପୁନରାଗଚ୍ଛ ସିଦ୍ଧାର୍ଥ
ପ୍ରକାଶକ : ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ଼

୨୦୦୫ : ଓଡ଼ିଆ ଗୀତା
ପ୍ରକାଶକ : ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ ।

୨୦୧୩ : ପ୍ରବନ୍ଧ ସଂକଳନ
ସଂ.ଓ ପ୍ର.: ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ ।

୨୦୧୪ : ଯୁବକ-ଯୁବତୀ
ପ୍ରକାଶକ: ଶ୍ରୀ ପ୍ରସନ୍ନ କୁମାର ଦାଶ, ବରଗଡ ।

(English) 1960 : Gleanings From Gangadhar
Sansar Press, Cuttack
2006 : Gleanings From Gangadhar
2nd Edn.:Pub.:Sri P.K.Dash, Bargarh
2006 : The Banished
Pub. by.: Sri P. K. Dash, Bargarh

**ପୁସ୍ତକ ଓ ବିକ୍ଷିପ୍ତ ରଚନା : (ଓଡ଼ିଆ)**

ଉଦ୍‌ଗାତା, ଗୋବିନ୍ଦଚନ୍ଦ୍ର ୧୯୮୧ : ସାହିତ୍ୟ ପ୍ରସଙ୍ଗ, ସମ୍ବଲପୁର ।
୧୯୮୮ : କବି ଗଙ୍ଗାଧର ମେହେର,
ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର ।
୧୯୯୨ : କାବ୍ୟଶିଳ୍ପୀ ଗଙ୍ଗାଧର, ସମ୍ବଲପୁର ।
୧୯୯୭ : ଅଳଂକାର ପ୍ରସଙ୍ଗ, (୪ର୍ଥ ସଂସ୍କରଣ)
(୧୯୭୮) ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

କବି, ଅସିତ ୧୯୬୨ : ଗଙ୍ଗାଧର ଜୀବନୀ (ପ୍ରଥମଭାଗ)
ପ୍ରକାଶିକା: ଶ୍ରୀମତୀ ସବିତା କବି, କବି-କୁଟୀର
ଷଡ଼ୈକଲା, ଗ୍ରାଫିକ୍ ଆର୍ଟ ପ୍ରେସ୍, ସମ୍ବଲପୁର
୧୯୬୪ : ବରେଣ୍ୟ ଲେଖକ ଦୟାନିଧି
ପ୍ରକାଶିକା : ଶ୍ରୀମତୀ ସବିତା କବି
କବି-କୁଟୀର, ସଢ଼େଇକଲା
ବିଶ୍ୱ ଭାରତୀ ପ୍ରେସ୍, ସମ୍ବଲପୁର ।
୧୯୭୨ : ତପସ୍ୱିନୀ ଓ କବି ଗଙ୍ଗାଧର ।
ଗ୍ରନ୍ଥମନ୍ଦିର, କଟକ-୨ ।
୧୯୯୪ : ଓଡ଼ିଆସାହିତ୍ୟ ସମାଲୋଚନା ଇତିହାସ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨ ।

କର, ବିଶ୍ୱନାଥ ୧୮୯୬ : ବିବିଧ ପ୍ରବନ୍ଧ (ପ୍ରଥମ ସଂସ୍କରଣ)
Printed at : The Ray Press,
Cuttack - 1896, ମୂଲ୍ୟ : ଦଶଅଣା ।

ଗିରି, ଅରବିନ୍ଦ ୨୦୦୭ : ଓଡ଼ିଶାର ପ୍ରଥମ ସାହିତ୍ୟ ପତ୍ର: ଉତ୍କଳ ଦର୍ପଣ
(ସଂ.) ପ୍ରଗତି ଉତ୍କଳ ସଂଘ, ରାଉରକେଲା ।

ଗୁରୁ, ଗଙ୍ଗାଧର ୧୯୬୫ : ବାଣୀ ବିଳାସ
ବିକାଶ ପ୍ରେସ୍, ଜୟପୁର ।

| | |
|---|---|
| ଗୁରୁ, ଗଙ୍ଗାଧର | ୧୯୬୯ : ରାଜର୍ଷି ରାମଚନ୍ଦ୍ର<br>ନବଜୀବନ ପ୍ରେସ୍, କଟକ-୨ । |
| ଦାଶ, ଗୋପବନ୍ଧୁ | ୨୦୦୩ : ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳୀ<br>୧ମ ଖଣ୍ଡ, (ସଂ): ଦେବେନ୍ଦ୍ର କୁମାର<br>ଦାଶ, ଗ୍ରନ୍ଥମନ୍ଦିର, କଟକ-୨ । |
| ଦାଶ, ଗୌରାଙ୍ଗ ଚରଣ | ୨୦୦୯ : ବିତର୍କ ଓ ବ୍ୟାଖାନ, ପ୍ର. 'ସରସ୍ୱତୀ'<br>ଗୌରୀନଗର, ଭୁବନେଶ୍ୱର । |
| ଦାଶ, ଦେବେନ୍ଦ୍ର କୁମାର | ୧୯୯୫: ଗଙ୍ଗାଧର : କବିତା ଓ କବି ଆତ୍ମା<br>ପ୍ର. ପ୍ରଗତି ଉତ୍କଳ ସଂଘ, ରାଉରକେଲା<br>୨୦୦୫ : ଉତ୍କଳ ସମ୍ମିଳନୀ (ପ୍ରଥମଖଣ୍ଡ)<br>ସଂ:ପ୍ରଗତି ଉତ୍କଳ ସଂଘ, ରାଉରକେଲା |
| ଦାଶ, ପ୍ରସନ୍ନ କୁମାର | ୧୯୬୭ : ବୁଢ଼ାମାଷ୍ଟ୍ରେ- (୧) ଓଡ଼ିଶା ମାଧ୍ୟମିକ<br>ସ୍କୁଲ ଶିକ୍ଷକସଂଘ, ବିଂଶତମସାଧାରଣ<br>ସମ୍ମିଳନୀ ସ୍ମରଣିକା, ସମ୍ବଲପୁର ।<br>୧୯୯୨: ବୁଢ଼ାମାଷ୍ଟ୍ରେ- (୨) ବରପୁତ୍ର - ଗାନ୍ଧୀ<br>ସ୍ମୃତି ପାଠାଗାର, ବରଗଡ଼ |
| ଦାଶ, ଶିବପ୍ରସାଦ | ୧୯୬୨ : ସମ୍ବଲପୁର ଇତିହାସ,<br>ବିଶ୍ୱ ଭାରତୀ ପ୍ରେସ୍, ସମ୍ବଲପୁର । |
| ଦାଶ, ସୂର୍ଯ୍ୟ ନାରାୟଣ | ୧୯୪୮ : ଓଡ଼ିଆ ସାହିତ୍ୟର ପରିଚୟ<br>(ଦ୍ୱିତୀୟଭାଗ)<br>ପ୍ରଗତି ପ୍ରେସ୍, କଟକ ।<br>୧୯୫୧: ଓଡ଼ିଆ ସାହିତ୍ୟର ପରିଚୟ,<br>୨ୟ ସଂ. (ପ୍ରଥମ ଖଣ୍ଡ)<br>ନବଭାରତ ପ୍ରେସ୍, କଟକ-୨ ।<br>୨୦୧୦: ଉତ୍କଳମଣି ଗୋପବନ୍ଧୁ, ନୂତନ ମୁଦ୍ରଣ<br>(୧୯୭୫)ଗ୍ରନ୍ଥମନ୍ଦିର, କଟକ-୨ ।<br>୨୦୧୧: ଦେଶପ୍ରାଣ ମଧୁସୂଦନ (ନୂତନ ମୁଦ୍ରଣ)<br>(୧୯୭୧): ଗ୍ରନ୍ଥମନ୍ଦିର, କଟକ-୨ |
| ଦାଶ, ସ୍ୱପ୍ନେଶ୍ୱର<br>(କବିଭୂଷଣ) | ୧୯୨୩: ସମ୍ବଳ ମନସା (ପ୍ରଥମ ସଂସ୍କରଣ)<br>ସାଧନା ପ୍ରେସ୍, ସମ୍ବଲପୁର ।<br>ପ୍ରକାଶକ: ସୋନପୁର ଦରବାର । |

୧୯୨୪: ତୁଳସୀ ରାମାୟଣ (ପ୍ରଥମ ସଂସ୍କରଣ)
କିଶୋରଚନ୍ଦ୍ର ପ୍ରେସ୍, ଆସ୍କା (ଗଞ୍ଜାମ)
ପ୍ର.: ଶ୍ରୀ ମଦନ ମୋହନ ସିଂହଦେବ ।
(ଧରାକୋଟ ରାଜା)

୧୯୨୪: କୃତଜ୍ଞତା – ପୁଷ୍ପାଞ୍ଜଳି (୧ମ ସଂ.)
ସାଧନା ପ୍ରେସ୍, ସମ୍ବଲପୁର
ପ୍ରକାଶକ: ସୋନପୁର ଦରବାର

୧୯୩୭: ଅନ୍ତ୍ୟେଷ୍ଟିଯାଗ (ପ୍ରଥମ ସଂସ୍କରଣ)
ସାଧନା ପ୍ରେସ୍, ବରଗଡ଼
ପ୍ରକାଶକ: ସୋନପୁର ଦରବାର

୧୯୫୧: ଅନ୍ନପୂର୍ଣ୍ଣା-ସ୍ତୋତ୍ରମ ଓ ଅଚ୍ୟୁତାଷ୍ଟକମ୍
(୧ମ ସଂସ୍କରଣ) ଗୋସ୍ୱାମୀ ପ୍ରେସ୍
କଟକ-୧
ପ୍ରକାଶକ: ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ।

୧୯୫୩: ବୈଦ୍ୟ କଳ୍ପଦ୍ରୁମ (ନୂତନ ସଂସ୍କରଣ)
ଗୋସ୍ୱାମୀ ପ୍ରେସ୍, କଟକ-୧
ପ୍ରକାଶକ: ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ।

୧୯୫୬: କବିତା ଝଟିକା (ପ୍ରଥମ ସଂସ୍କରଣ)
ଗୋସ୍ୱାମୀ ପ୍ରେସ୍, କଟକ-୧
ପ୍ରକାଶକ: ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ।

୧୯୫୬: କାମାୟନୀ (ପ୍ରଥମ ମୁଦ୍ରଣ)
ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ
ପ୍ରକାଶକ: ସ୍ୱପ୍ନେଶ୍ୱର ଦାଶ କବିଭୂଷଣ ।

୧୯୫୭: ପ୍ରବଚନ ତରଙ୍ଗ (ପ୍ରଥମ ସଂସ୍କରଣ)
ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ
ପ୍ରକାଶକ: ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର
କଟକ-୨

୧୯୫୭: କର୍ମବୀର ବାଲ୍ମିକି ଦାଶ (ପ୍ରଥମ ସଂ.)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ: ବିଜୟ କେତନ ଦାଶ

୧୯୫୮: ଚୌହାଣବୀର ସୁରେନ୍ଦ୍ର ସାଏ

(ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ: ଶ୍ରୀଯୁକ୍ତ ଅନୁପ ସିଂହଦେବ
(ରାଜା ସାହେବ ଖଡ଼ିଆଳ)

୧୯୫୮: ଗାନ୍ଧୀ ବୋଲି (ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ: ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୯: କବିତା ପେଟିକା (ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ: ସ୍ୱପ୍ନେଶ୍ୱର ଦାଶ, କବିଭୂଷଣ

୧୯୫୯: ଆଁସୂବା ଅଶ୍ରୁ (ପ୍ରଥମ ସଂସ୍କରଣ)
ନବଜୀବନ ପ୍ରେସ୍, କଟକ-୨
ପ୍ରକାଶକ: ଶ୍ରୀ ବିଜୟ କେତନ ଦାଶ

୧୯୬୦: ତୁଳସୀ ରାମାୟଣ (ଦ୍ୱିତୀୟ ସଂସ୍କରଣ)
ରାଷ୍ଟ୍ରଭାଷା ସମବାୟ ପ୍ରେସ୍, କଟକ-୧
ପ୍ର. : ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର,
କଟକ-୨

୧୯୬୩ : ଶଙ୍କରାଚାର୍ଯ୍ୟ ଗ୍ରନ୍ଥାବଳୀ
(ସଂ) (ପ୍ରଥମ ସଂସ୍କରଣ)
ଲକ୍ଷ୍ମୀନାରାୟଣ ପ୍ରେସ୍, କଟକ-୨
ପ୍ରକାଶକ: ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

ଦାସ, ଗଗନେନ୍ଦ୍ରନାଥ
୧୯୬୩: ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ-୨

ଦାସ, ଦାଶରଥୀ
୧୯୭୩: କାବ୍ୟ ସମ୍ବାଦ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

୧୯୭୮: କବିସୂର୍ଯ୍ୟ କାବ୍ୟବିଭା
ଅଗ୍ରଦୂତ, କଟକ

୧୯୯୩: ବିବିଧ ପ୍ରସ୍ତାବ
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

୧୯୯୬: ସାହିତ୍ୟ ବିବେକ

| | |
|---|---|
| | ଅଗ୍ରଦୂତ, କଟକ |
| ଦାସ, ମଧୁସୂଦନ (ଉତ୍କଳ ଗୌରବ) | ୨୦୧୦: ଉତ୍କଳ ଗୌରବ : ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ (ସଂ.) ଶ୍ରୀ ଦେବେନ୍ଦ୍ର କୁମାର ଦାଶ ଡକ୍ଟର୍ ନଗେନ୍ ଦାସ ପ୍ରକାଶକ: ପ୍ରଗତି ଉତ୍କଳ ସଂଘ ରାଉରକେଲା । |
| ନନ୍ଦ, ଫଣୀନ୍ଦ୍ର ଭୂଷଣ | ୨୦୦୨: ସମ୍ବଲପୁର ହିତୈଷିଣୀ: ଏକ ଅଧ୍ୟୟନ ଅପୂର୍ବା, ଭୁବନେଶ୍ୱର |
| | ୨୦୦୭: ସାର୍ ସୁଡ଼ଳଦେବ ନବୋଦୟ ପ୍ରକାଶନ, କଟକ-୨ |
| | ୨୦୦୮: ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର |
| | ୨୦୧୨: ଜଳନ୍ଧର ଦେବ ଗ୍ରନ୍ଥାବଳୀ (ସଂ) କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ-୨ |
| ନନ୍ଦଶର୍ମା, ଗୋପୀନାଥ | ୨୦୧୧: ପଣ୍ଡିତ ଗୋପୀନାଥ ନନ୍ଦ ଗ୍ରନ୍ଥାବଳୀ (ସଂ) (ପ୍ରଥମଭାଗ) ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ-୨ |
| ନାୟକ, ଭରତଚନ୍ଦ୍ର | ୧୯୬୬: ମୋର ପୂର୍ବ ସ୍ମୃତିକଥା ନବଜୀବନ ପ୍ରେସ୍, କଟକ |
| ପଟ୍ଟନାୟକ, ପଦ୍ମଚରଣ | ୧୯୪୦: ପ୍ରବନ୍ଧ ପାରିଜାତ (ପ୍ରଥମ ସଂସ୍କରଣ) କଟକ ପବ୍ଲିଶିଂ ହାଉସ୍, କଟକ |
| ପଟ୍ଟନାୟକ, ସାଧୁଚରଣ | ୧୯୮୩: ଗୁରୁଦେବ ସ୍ମରଣେ – ଗଣଇସ୍ତାହାର, ତା୩ ।୬ ।୧୯୮୩ |
| ପଟ୍ଟନାୟକ, ସୁଧାକର | ୧୯୭୨: ସମ୍ବାଦ ପତ୍ରରୁ ଓଡ଼ିଶାର କଥା ଗ୍ରନ୍ଥମନ୍ଦିର, କଟକ-୨ |
| ପଣ୍ଡା, ବ୍ରଜମୋହନ | ୧୯୬୨: ଯୌବନ ଗାଥା, ସମ୍ବଲପୁର |
| ପଣ୍ଡା, ଶଶାଙ୍କ ଶେଖର | – |
| ପାଢ଼ୀ, ବେଣୀମାଧବ | ୧୯୭୧: ଧୀ ଓ ଧିଷଣା |

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ ।

ପତି, ମଧୁସୂଦନ
୧୯୭୯: ଅନୁଶୀଳନ, ଅଗ୍ରଦୂତ, କଟକ
୨୦୦୬: ଦର୍ଶନ ଓ ନିବେଦନ
ମିତାବୁକ୍ସ, କଟକ-୨

ପତି, ରତ୍ନାକର
୧୯୫୬: ପ୍ରବନ୍ଧ-ପ୍ରକାଶ (ଚତୁର୍ଥ ସଂ.)
(୧୯୨୭) ପ୍ରଭାତୀ ପ୍ରେସ୍, କଟକ-୨

ପାଣିଗ୍ରାହୀ, ନୀଳମାଧବ
୧୯୯୨(କ): ଓଡ଼ିଶାରେ ଉପକୂଳିଆ ପ୍ରଦେଶ
କେବେ ଓ କାହିଁକି ?
ପ୍ରକାଶକ: ନିସାନ୍ ସାହିତ୍ୟ ସଂସଦ,
ସମ୍ବଲପୁର
୧୯୯୨(ଖ): ଓଡ଼ିଶା ସହିତ ସମ୍ବଲପୁର
ମିଶ୍ରଣର ଅଜ୍ଞାତ ଦିଗନ୍ତ ।
ପ୍ରକାଶକ: ନିସାନ୍ ସାହିତ୍ୟ ସଂସଦ,
ସମ୍ବଲପୁର

ପାଣିଗ୍ରାହୀ, ହଟକିଶୋର
୨୦୦୫: ସଂସ୍କୃତି ପରିକ୍ରମା
ଅପୂର୍ବା, ଭୁବନେଶ୍ୱର

ପୂଜାରୀ, ଜନାର୍ଦ୍ଦନ (ଡାକ୍ତର)
୧୯୯୩: ସତ୍ ପ୍ରସଙ୍ଗ
ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର

ପ୍ରଧାନ, ଅଭିମନ୍ୟୁ
୧୯୬୨: କର୍ମସ୍ୱାମୀ ପୂଜା
ଶାନ୍ତି ପ୍ରିଣ୍ଟିଂ ପ୍ରେସ୍, ବରଗଡ଼

ପ୍ରଧାନ, ବିହାରୀ
୧୯୫୯: ଅଛୁଆଁ କିଏ ?
ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍
ବ୍ରହ୍ମପୁର (ଗଞ୍ଜାମ)

ପୃଷେଠ, ନାରାୟଣ
୨୦୦୨: ବୁଢ଼ାମାଷ୍ଟ୍ରେଙ୍କ ସାହିତ୍ୟ ସଂସାର
ଗଣଇସ୍ତାହାର, ବରଗଡ଼
ତା ୭-୯-୨୦୦୨

ବଳ, ନନ୍ଦକିଶୋର
୧୯୯୭: ନନ୍ଦ କିଶୋର ଗ୍ରନ୍ଥାବଳୀ (୨ୟ ସଂ)
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨

ବିଶ୍ୱାଳ, ମଙ୍ଗଳୁ ଚରଣ
୨୦୦୫: ପ୍ରୀତିପାତ୍ର
ଗଣଇସ୍ତାହର, ତା୨୫।୩।୦୫
ବରଗଡ଼

ବେହେରା, ଚିନ୍ତାମଣି
୧୯୭୫: ବିଦଗ୍ଧ ପାଠକ
ଜଗନ୍ନାଥ ରଥ, କଟକ
୧୯୯୨: ସାହିତ୍ୟ ଚିନ୍ତା
ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ-୨
୧୯୯୬: କାବ୍ୟ ଓ କଳାକାର (୪ର୍ଥ ସଂ)
(୧୯୬୬) ଜଗନ୍ନାଥ ରଥ, କଟକ
୧୯୯୭: ଚିତ୍ର ଓ ଚରିତ୍ର
ଆର୍ଯ୍ୟପ୍ରକାଶନ, କଟକ

ବ୍ରହ୍ମା, ଭୈରବ
୨୦୦୩: ବୁଢ଼ାମାଷ୍ଟ୍ରେ : ଏକ ଅନୁଷ୍ଠାନ
ଦୈନିକ ସମ୍ବାଦ ତା୨୭-୩-୨୦୦୩
ସମ୍ବଲପୁର ।

ମହାନ୍ତି, ଗୋପୀନାଥ
୧୯୯୨: ସ୍ରୋତସ୍ୱତୀ (ପ୍ରଥମ ଭାଗ)
ବିଦ୍ୟାପୁରୀ, କଟକ-୨
୧୯୯୯: ସ୍ରୋତସ୍ୱତୀ (ଦ୍ୱିତୀୟ ଭାଗ)
ବିଦ୍ୟାପୁରୀ, କଟକ-୨
୨୦୦୦: ସ୍ରୋତସ୍ୱତୀ (ତୃତୀୟ ଭାଗ)
ବିଦ୍ୟାପୁରୀ, କଟକ-୨

ମହାନ୍ତି, ବିଷ୍ଣୁଚରଣ
୨୦୦୬: ସ୍ମୃତିବାସୀ
(ପ୍ର.) ପଶ୍ଚିମ ଓଡ଼ିଶା ବିକାଶ ପରିଷଦ,
ଭୁବନେଶ୍ୱର

ମହାନ୍ତି, ଶ୍ରୀଚରଣ
୨୦୦୪: କବିବର ରାଧାନାଥ
ଓଡ଼ିଶା ସାହିତ୍ୟ ଏକାଡ଼େମୀ,
ଭୁବନେଶ୍ୱର

ମାନସିଂହ, ମାୟାଧର
୧୯୫୧: ଓଡ଼ିଆ ସମାଜ ଓ ସାହିତ୍ୟ
ଭାରତୀ ବିହାର, କଟକ
୧୯୫୫: ଓଡ଼ିଆ ଜ୍ଞାନକୋଷ (ନମୁନା,
ପ୍ରଥମଖଣ୍ଡ) ନିଉଷ୍ଟୁଡ଼େଣ୍ଟସ୍ ଷ୍ଟୋର୍ସ,
କଟକ
୧୯୬୫: ଶିକ୍ଷାବିଦ୍‌ର ଗାଥା
ଓଡ଼ିଶା ବୁକ୍ ଷ୍ଟୋର୍, କଟକ-୨
୧୯୬୯: ଗୀତା ମାହାତ୍ମ୍ୟ

| | |
|---|---|
| | ଜେ ମହାପାତ୍ର ଏଣ୍ଡ କୋଃ, କଟକ-୨ |
| | ୧୯୯୦: ଓଡ଼ିଆ ସାହିତ୍ୟର ଇତିହାସ |
| | (୧୯୬୭) (ପଞ୍ଚମ ସଂସ୍କରଣ) |
| | ଗ୍ରନ୍ଥମନ୍ଦିର, କଟକ-୨ |
| ମିଶ୍ର, ଗୋପାଳ ଚନ୍ଦ୍ର | ୧୯୬୫: ଆଧୁନିକ ଓଡ଼ିଆ ସାହିତ୍ୟର ଗତିପଥ |
| | ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ |
| ମିଶ୍ର, ଦୟାନିଧି | ୧୯୮୪: ବିରହବଂଶୀ ଓ ଅନ୍ୟାନ୍ୟ କବିତା |
| | ଗୋପବନ୍ଧୁ ସାହିତ୍ୟ ମନ୍ଦିର |
| | ଗୋପବନ୍ଧୁ ଭବନ, କଟକ-୧ |
| | ୧୯୯୧: ଦୟାନିଧି କଥା ସମଗ୍ର |
| | କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ-୨ |
| ମିଶ୍ର, ରବିଶଙ୍କର | ୨୦୦୫: ଟୀକା ଓ ଟିପ୍ପଣୀ |
| | ଏମ୍. ଆର୍. ପ୍ରେସ୍, ବରଗଡ଼ |
| ମିଶ୍ର, ରାଘବ | ୧୯୯୯: ରାଘବ ଗ୍ରନ୍ଥାବଳୀ |
| | (ସଂ.) ଚୈତନ୍ୟ କର୍ମୀ, ବରଗଡ଼ |
| ମିଶ୍ର, ଶ୍ରୀନିବାସ | ୧୯୭୮: ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ |
| | ବିଦ୍ୟାପୁରୀ, କଟକ-୨ |
| ମିଶ୍ର, ହରିହର | ୧୯୨୭: ଅମର ପ୍ରାର୍ଥନା |
| | ଉତ୍କଳ ସାହିତ୍ୟ ପ୍ରେସ୍, କଟକ । |
| | ୧୯୨୯: ରାଘବ ବିଜୟ |
| | ଆଶା ପ୍ରେସ୍, ବ୍ରହ୍ମପୁର । |
| | ୧୯୭୨: ଗୋଚାର ସିଦ୍ଧି |
| | ବିଶ୍ୱଭାରତୀ ପ୍ରେସ୍, ସମ୍ବଲପୁର । |
| ମେହେର, କେଶବଚନ୍ଦ୍ର | ୧୯୫୪: ଶିକ୍ଷା ସଙ୍ଗୀତ |
| | ପ୍ରଜାତନ୍ତ୍ର ପ୍ରେସ୍, କଟକ । |
| | ୧୯୭୯: ସୃଷ୍ଟିର ସ୍ୱର |
| | ନାଳନ୍ଦା, କଟକ-୨ । |
| | ୧୯୯୨: ପ୍ରତିଭ ଓ ପ୍ରତିଭୂ |
| | ଓଡ଼ିଶା ବୁକ୍ ଷ୍ଟୋର୍, କଟକ । |
| ମେହେର, ଗଙ୍ଗାଧର | ୧୯୧୨: କବିତା କଲ୍ଲୋଳ (ପ୍ରଥମ ସଂସ୍କରଣ) |
| | ଉତ୍କଳ ପ୍ରେସ୍, କଲିକତା |

୧୯୪୦ : ତପସ୍ୱିନୀ (ଚତୁର୍ଥ ସଂସ୍କରଣ)
ଉତ୍କଳ ସାହିତ୍ୟ ପ୍ରେସ୍, କଟକ

୧୯୪୨ : ପ୍ରଣୟ ବଲ୍ଲରୀ (ଚତୁର୍ଥ ସଂସ୍କରଣ)
ସତ୍ୟବାଦୀ ପ୍ରେସ୍, କଟକ

୧୯୫୧ : ଗଙ୍ଗାଧର ଗ୍ରନ୍ଥାବଳୀ (ପ୍ରଥମ ସଂ)
(ସଂ) ଭଗବାନ ମେହେର, ବରପାଲି

୧୯୯୮ : ଗଙ୍ଗାଧର ଗ୍ରନ୍ଥାବଳୀ (ନୂତନ ସଂ.)
(ସଂ) ଡ. ମଣୀନ୍ଦ୍ର କୁମାର ମେହେର
ଗ୍ରନ୍ଥମନ୍ଦିର, କଟକ-୨

ମେହେର, ଭଗବାନ
୧୯୭୭ : ପିତୃ ପ୍ରସଙ୍ଗ
ଓଡ଼ିଶା ବୁକ୍‌ଷ୍ଟୋର୍, କଟକ-୨

ମେହେର, ରାଜାରାମ
୧୯୬୫ : ବଉଲ୍‌କେରା
ଧର୍ମଗ୍ରନ୍ଥଷ୍ଟୋର୍ କଟକ-୨

୧୯୮୩ : ଉତ୍ତାଳୀ
କିଶୋର ପ୍ରିଣ୍ଟିଂପ୍ରେସ୍, ବରପାଲି

୧୯୮୪ : ଚଉତିଶା ଚନ୍ଦ୍ରିକା
ଶୁଭ୍ରା ପ୍ରିଣ୍ଟର୍ସ ଏଣ୍ଡ କୋ: ବଲାଙ୍ଗୀର

ରଥ, ତାରିଣୀ ଚରଣ
୧୯୧୬ : ଉତ୍କଳ ସାହିତ୍ୟର ଇତିହାସ
(ପ୍ରଥମ ମୁଦ୍ରଣ)
ଉତ୍କଳ ସାହିତ୍ୟପ୍ରେସ୍, କଟକ

ରଥ, ମୃତ୍ୟୁଞ୍ଜୟ
୧୯୯୭ : ନାରୀ ଦର୍ପଣ (ନୂତନ ସଂ)
ନବୋଦୟ ପ୍ରକାଶନ, କଟକ-୨

ରାଓ, ମଧୁସୂଦନ
୨୦୧୧ : ଭକ୍ତକବି ମଧୁସୂଦନ ଗ୍ରନ୍ଥାବଳୀ
(ସଂ.) ଶ୍ରୀ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ-୨

ରାୟ, ରାଧାନାଥ
୧୯୯୮ : କବିବର ରାଧାନାଥ ଗ୍ରନ୍ଥାବଳୀ
(ସଂ) ଶ୍ରୀ ପ୍ରସନ୍ନ କୁମାର ମିଶ୍ର ଓ
ଶ୍ରୀ ଦେବେନ୍ଦ୍ର କୁମାର ଦାଶ
ଗ୍ରନ୍ଥମନ୍ଦିର, କଟକ-୨

ରାୟ, ଶଶିଭୂଷଣ
୧୯୧୫ : ଉତ୍କଳ ପ୍ରକୃତି (ପ୍ରଥମ ସଂସ୍କରଣ)
ଉତ୍କଳ ସାହିତ୍ୟ ଯନ୍ତ୍ରାଳୟ, କଟକ

୧୯୩୭ : ପଲ୍ଲୀ (ପ୍ରଥମ ସଂସ୍କରଣ)
ଉତ୍କଳ ସାହିତ୍ୟ ପ୍ରେସ୍, କଟକ
୧୯୪୪ : ଉତ୍କଳର ଋତୁଚିତ୍ର (ଷଷ୍ଠ ମୁଦ୍ରଣ)
ଉତ୍କଳ ସାହିତ୍ୟ ପ୍ରେସ୍, କଟକ
୧୯୪୭ : ବଡ଼ାମ୍ବା ପ୍ରକୃତି (ପ୍ରଥମ ସଂସ୍କରଣ)
ମଦନ ମୋହନ ପ୍ରେସ୍, କଟକ
୧୯୭୪ : ପ୍ରବନ୍ଧ ପ୍ରବାହ (ପୁନର୍ମୁଦ୍ରଣ)
ନିଉଷ୍ଟୁଡ଼େଣ୍ଟସ୍ ଷ୍ଟୋର୍, କଟକ-୨

ରାୟଗୁରୁ, ମୁକୁନ୍ଦ
୧୯୫୩ : ପାଞ୍ଚପୋଇ (୨ୟ ସଂସ୍କରଣ)
କୋଶଳ କଳା ମଣ୍ଡଳ ପ୍ରେସ୍
ବଲାଙ୍ଗୀର

ଶେଠ, ଖଗେଶ୍ୱର
୧୯୫୪ : ମହାପ୍ରଭୁ (ପ୍ରଥମ ପ୍ରକାଶ)
ଶାନ୍ତି ପ୍ରିଣ୍ଟିଙ୍ଗ୍ ପ୍ରେସ୍, ବରଗଡ଼
୧୯୫୯ : ଆମେ କ'ଣ ଅଛୁଆଁ ?
(ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍,
ବ୍ରହ୍ମପୁର (ଗଞ୍ଜାମ)
୧୯୬୨ : ପୁଷ୍ପାଞ୍ଜଳି
(ସଂ.) ଖଗେଶ୍ୱର ଶେଠ
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍,
ବ୍ରହ୍ମପୁର, ଗଞ୍ଜାମ ।
୧୯୬୨ : ମାତା-ମହନ୍ତ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍,
ବ୍ରହ୍ମପୁର (ଗଞ୍ଜାମ)
୧୯୬୫ : ଜାନ୍‌କୀ ଜବାବ୍ (ପ୍ରଥମ ସଂସ୍କରଣ)
ବିଶ୍ୱଭାରତୀ ପ୍ରେସ୍
ମୋଦିପଡ଼ା, ସମ୍ବଲପୁର
୧୯୬୭ : ଭୋଟ୍ ବିଚାର୍ (ଦ୍ୱିତୀୟ ସଂସ୍କରଣ)
ଭାରତୀ ପ୍ରେସ୍, ଟିଟିଲାଗଡ଼
ବଲାଙ୍ଗୀର
୧୯୭୩ : ଖଗେଶ୍ୱର ଗ୍ରନ୍ଥାବଳୀ

(୧୯୫୮)(ପ୍ରଥମଭାଗ, ୨ୟ ସଂ)
ଖଗେଶ୍ୱର ଶେଠ, ସମ୍ବଲପୁର ।

ଶେଠ, ଦୀପ୍ତିରଞ୍ଜନ
୨୦୧୩: କବିଭୂଷଣ-ସ୍ୱପ୍ନେଶ୍ୱର ଦାଶ
ଦିବ୍ୟ ପ୍ରକାଶନୀ, ଭୁବନେଶ୍ୱର-୨

ସାମନ୍ତରାୟ, ନଟବର
୧୯୫୯: ଆଧୁନିକ ଓଡ଼ିଆ ସାହିତ୍ୟର ଦିଗ୍‌ଦର୍ଶନ
ବାଣୀ ଭଣ୍ଡାର, କଟକ-୧
୧୯୭୯: ଆଧୁନିକ ଓଡ଼ିଆ ସାହିତ୍ୟ-
ବିକାଶର ପୃଷ୍ଠଭୂମି, ଭୁବନେଶ୍ୱର ।
୧୯୮୩: ଓଡ଼ିଆ ସାହିତ୍ୟର ଇତିହାସ(୨ୟ ସଂ)
(୧୯୬୪) ଭୁବନେଶ୍ୱର ।

ସାହୁ, ଖଗେଶ୍ୱର
୧୯୪୦: ଜୀରାକୂଳେ (ପ୍ରଥମ ମୁଦ୍ରଣ)
ନବଭାରତ ପ୍ରେସ୍, କଟକ
୧୯୪୨: ମାଳିକା (ପ୍ରଥମ ସଂସ୍କରଣ)
୧୯୫୦: ଜୀବନ ସାଥୀ (ପ୍ରଥମ ମୁଦ୍ରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍, ବ୍ରହ୍ମପୁର
(ଗଞ୍ଜାମ)
୧୯୫୪: ଆଲେଖ୍ୟ ଦର୍ଶନ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍, ବ୍ରହ୍ମପୁର
(ଗଞ୍ଜାମ)
୧୯୫୯: ବ୍ରଜ ବିରହ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍, ବ୍ରହ୍ମପୁର
(ଗଞ୍ଜାମ)
୧୯୬୦: ସାଉଁଟା ଫୁଲ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍, ବ୍ରହ୍ମପୁର
(ଗଞ୍ଜାମ)
୧୯୬୧: ତ୍ୟାଗବୀର (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍, ବ୍ରହ୍ମପୁର
(ଗଞ୍ଜାମ)
୧୯୬୨: ନିବେଦନ (ପ୍ରଥମ ସଂସ୍କରଣ)
ଓଡ଼ିଶା ପ୍ରିଣ୍ଟିଙ୍ଗ୍ ୱାର୍କସ୍, ବ୍ରହ୍ମପୁର
(ଗଞ୍ଜାମ)

| | |
|---|---|
| | ୧୯୬୩: ବାଳିବଧ (ପ୍ରଥମ ସଂସ୍କରଣ)<br>ଧର୍ମଗ୍ରନ୍ଥ ଷ୍ଟୋର୍, କଟକ |
| ସାହୁ, ଲକ୍ଷ୍ମୀନାରାୟଣ | ୧୯୨୧: ସ୍ତ୍ରୀ ଶିକ୍ଷା (ପ୍ରଥମ ମୁଦ୍ରଣ)<br>ଉତ୍କଳ ସାହିତ୍ୟ ପ୍ରେସ୍, କଟକ<br>ପ୍ରକାଶକ: ସୋନପୁର ଦରବାର । |
| ସେନାପତି, ଦେବାନନ୍ଦ | ୨୦୦୧: ଦେବାନନ୍ଦ ସଞ୍ଚୟନ (ପ୍ରଥମ ଭାଗ)<br>(ସଂ) ଅଧ୍ୟାପକ ରମେଶ ଦାସ<br>ଦିବ୍ୟ ପ୍ରକାଶନୀ, ଭୁବନେଶ୍ୱର-୨<br>୨୦୦୧: ଦେବାନନ୍ଦ ସଞ୍ଚୟନ (ଦ୍ୱିତୀୟ ଭାଗ)<br>(ସଂ) ଅଧ୍ୟାପକ ରମେଶ ଦାସ<br>ଦିବ୍ୟ ପ୍ରକାଶନୀ, ଭୁବନେଶ୍ୱର-୨ |
| ସେନାପତି, ଫକୀର ମୋହନ | ୨୦୦୦: ଫକୀର ମୋହନ ଗ୍ରନ୍ଥାବଳୀ<br>(ପ୍ରଥମ ଖଣ୍ଡ)<br>(ସଂ) ଡ. କୃଷ୍ଣଚରଣ ବେହେରା ଓ<br>ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ<br>ଗ୍ରନ୍ଥମନ୍ଦିର, କଟକ-୨<br>୨୦୦୨: ଫକୀର ମୋହନ ଗ୍ରନ୍ଥାବଳୀ<br>(ଦ୍ୱିତୀୟ ଖଣ୍ଡ)<br>(ସଂ) ଡ. କୃଷ୍ଣଚରଣ ବେହେରା ଓ<br>ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ<br>ଗ୍ରନ୍ଥମନ୍ଦିର, କଟକ-୨<br>୨୦୦୮: ଫକୀର ମୋହନ ସେନାପତିଙ୍କ<br>ଆତ୍ମଚରିତ<br>(ସଂ) ଅଧ୍ୟାପକ ଦେବେନ୍ଦ୍ରକୁମାର ଦାଶ<br>ନ୍ୟାସନାଲ୍ ବୁକ୍‌ଟ୍ରଷ୍ଟ, ଇଣ୍ଡିଆ |
| ସିଂହଦେବ, ଅନୁପ | ୧୯୭୮: ସମୁଚ୍ଚୟ (ପ୍ରଥମ ସଂସ୍କରଣ)<br>ଗୋସ୍ୱାମୀ ପ୍ରେସ୍, କଟକ-୨<br>୧୯୮୫: ବିରହ ବାରିଧି<br>ଖଡ଼ିଆଳ ସାହିତ୍ୟ ସମିତି<br>ଖଡ଼ିଆଳ - ୭୬୬୧୦୭ |
| ଦାଶ, ଗୌରାଙ୍ଗ ଚରଣ | ୨୦୦୮: ଗୋପାଳ ଚନ୍ଦ୍ର ପ୍ରହରାଜ |

(୧୯୯୫) ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର-୧୪ ।

ପଣ୍ଡା, ଶଶାଙ୍କ ଶେଖର
୨୦୦୧: କବିତା ଗୁଚ୍ଛ
ଅନୁଶୀଳନ, ସମ୍ବଲପୁର
୨୦୦୩: ଝୁଲ୍‌ପୁଲ୍
ଚିତ୍ରୋତ୍ପଳା ପବ୍ଲିକେଶନ୍‌ସ୍
ସାଲେପୁର, କଟକ
୨୦୦୪: ପଶ୍ଚିମ ଓଡ଼ିଶାର ଗୀତି କବିତା
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର ।

ଶେଠ, ଦୀପ୍ତିରଞ୍ଜନ
୨୦୧୪:କୋଶଳବ୍ୟାସ:ନୀଳମାଧବ ପାଣିଗ୍ରାହୀ
ପ୍ରକାଶକ : ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ
ଅଧ୍ୟାପିକା ସୁନନ୍ଦା ପାଣିଗ୍ରାହୀ,
ସମ୍ବଲପୁର ।
୨୦୧୫: କର୍ମଯୋଗୀ– ବ୍ରଜମୋହନ
ପ୍ରକାଶକ: ଶ୍ରୀ ପଦ୍ମଲୋଚନ ପଣ୍ଡା,
ବ୍ରଜଧାମ, ସମ୍ବଲପୁର ।

**ପତ୍ର – ପତ୍ରିକା :**

(୧) ସମ୍ବଲପୁର ହିତୈଷିଣୀ
(୨) ଉତ୍କଳ ସେବକ
(୩) ହୀରାଖଣ୍ଡ ସମାଚାର
(୪) ଝଙ୍କାର
(୫) ମେହେର ପ୍ରଦୀପ
(୬) ସପ୍ତର୍ଷି
(୭) କୋଣାର୍କ
(୮) ସାହିତ୍ୟ ସମାଚାର
(୯) ପାଞ୍ଚଜନ୍ୟ
(୧୦) ଏଷଣା
(୧୧) ଗଙ୍ଗାଧର ସ୍ମରଣିକା - ୧୯୬୨, ରେଭେନ୍‌ସା କଲେଜ, କଟକ
(୧୨) ଗଙ୍ଗାଧର ସ୍ମରଣିକା - ୧୯୬୨, ବରପାଲି ।

